# ଅଭିନବ ନୀତି ଶିକ୍ଷା





ଡକ୍ଟର କୃତ୍ତିବାସ ନାୟକ

# :ଅଭିନବ ନୀତିଶିକ୍ଷା:

ଡକ୍ଟର କୃତ୍ତିବାସ ନାୟକ

କଳିଙ୍ଗକନ୍ୟା
ମହିମାଗାଦି, ଢେଙ୍କାନାଳ

ମୂଲ୍ୟ : ୫୦ ଟଙ୍କା

# :ଅଭିନବ ନୀତିଶିକ୍ଷା:


ରଚନା :

ଡକ୍ଟର କୃତ୍ତିବାସ ନାୟକ



ପ୍ରଥମ ପ୍ରକାଶ :

୨୦୦୬

ପ୍ରକାଶକ :

କଳିଙ୍ଗ କନ୍ୟା,

ତେରମାଇଲ ଛକ,

ମହିମାଗାଦି, ଢେଙ୍କାନାଳ

ପିନ୍ : ୭୫୯୦୧୪





*Retold by :*

Dr. Krutibas Nayak



*First Edition* :

2006

*Publisher :*

KALINGA KANYA,

Teramile Chhaka,

Mahimagadi, Dhenkanal

Ph : 9937743508

Pin : 759014






# ଠେକୁଆ ଓ କଇଞ୍ଛଙ୍କ ଦୌଡ଼

**ଆମେ ପଢ଼ିଥିଲୁ-**

ଥରେ ଠେକୁଆ ଓ କଇଞ୍ଛଙ୍କ ମଧ୍ୟରେ ଦୌଡ଼ ପ୍ରତିଯୋଗିତା ହୋଇଥିଲା । ସେଦିନ ଠେକୁଆ ଟିକେ ଭୁଲ କରି ଶୋଇ ପଡ଼ି ଥିବାରୁ ମଠୁଆ ଜୀବ କଇଞ୍ଛ ଜିତି ଯାଇଥିଲା ।

**ତା'ପରେ କ'ଣ ହେଲା ଜାଣିଛ ?**

ଶୀଘ୍ର ଦୌଡ଼ି ପାରୁଥିବା ଠେକୁଆ ହାରିଯାଇ ଥିବାରୁ ଲାଜରେ ଆଉ ମୁଣ୍ଡ ଟେକି ପାରିଲା ନାହିଁ । ମନ ଦୁଃଖରେ ସେ ଘରକୁ ଫେରିଲା । ରାତିରେ ତାକୁ ନିଦ ଆସିଲା ନାହିଁ । କେତେ କ'ଣ ଚିନ୍ତା କଲା । ଶେଷରେ ତା' ମୁଣ୍ଡକୁ ଗୋଟାଏ ବୁଦ୍ଧି ଜୁଟିଲା ।

ହାରି ଯାଇଥିବା ଦୁଃଖ ତ କେବଳ ଜିତିବାରେ ହିଁ ମିଳିପାରେ । ତେଣୁ ଯେମିତି ହେଲେ ପ୍ରତିଯୋଗିତାରେ କଇଞ୍ଛକୁ ଜିତିବାକୁ ହେବ । ଏକଥା ଭାବି ଭାବି ସେ ବଡ଼ି ସକାଳୁ କଇଞ୍ଛର ଦୁଆରେ ପହଞ୍ଚି ଗଲା । ତାକୁ ଦେଖି କହିଲା -'ଭାଇ! କାଲି ପ୍ରତିଯୋଗିତାରେ ତମେ ଜିତିଛ, ତେଣୁ ମୋ ତରଫରୁ ଅଭିନନ୍ଦନ ଗ୍ରହଣ କର । ମୋର ଇଚ୍ଛା ହେଉଛି, ଆଉ ଥରେ

ପ୍ରତିଯୋଗିତା କରିବା । ଗତକାଲି ଯେମିତି, ଯେଉଁଠି ଦୌଡ଼ ପ୍ରତିଯୋଗିତା ହେଇଥିଲା । ଆଜି ଠିକ୍ ସେଇମିତି ହେବ' ।

ଅନେକ ଦିନପରେ ଜିତିବାର ସ୍ୱାଦ ଚାଖିଥିବା କଇଞ୍ଛ ଆଗ ପଛ ବିଚାର ନକରି , ଠେକୁଆ କଥାରେ ରାଜି ହେଇଗଲା ।

ଗତଥର ଠେକୁଆ ଯେଉଁ ଭୁଲ କରିଥିଲା, ସେକଥା ତା' ମନରେ ଥାଏ । ପ୍ରତିଦ୍ୱନ୍ଦ୍ୱୀକୁ କଦାପି ଛୋଟ ମନେ କରିବା ଉଚିତ ନୁହେଁ । ସେହି କଥାକୁ ଠେକୁଆ ମନେ ରଖିଥାଏ । ସେ ଏଥର ବାଟରେ ମୋଟେ ଅଟକିଲା ନାହିଁ । ଖପ୍ ଖପ୍ କରି ଡେଇଁ ଡେଇଁକା ଦଉଡ଼ିଲା । ଅଳ୍ପ ସମୟ ଭିତରେ ଠେକୁଆ ଲକ୍ଷ୍ୟ ସ୍ଥଳରେ ଥିବା ବରଗଛକୁ ଛୁଇଁ ଦେଲା । ସେତେବେଳକୁ କଇଞ୍ଛ କାହିଁ କେତେଦୂରରେ ରହିଥାଏ । ବହୁତ ଡେରିରେ ପହଞ୍ଚି ସେ ଜାଣିଲା, ଠେକୁଆ ଜିତି ସାରିଲାଣି । ନିଜେ ହାରି ଯାଇ ଥିବାରୁ ତା' ମନରେ ଭାରି ଦୁଃଖ ହେଲା ।

ପ୍ରତିଯୋଗିତାରେ କଇଞ୍ଛ ତ ପୂର୍ବରୁ କେବେ ଜିତି ନଥିଲା । ଜୀବନରେ ଥରେ ମାତ୍ର ସେ ଜିତିବାର ସ୍ୱାଦ ଚାଖିଥିଲା । ସେତିକ ମଧ୍ୟ ଏବେ ଚାଲିଗଲା । ତାକୁ ଭାରି କାନ୍ଦ ମାଡ଼ିଲା । ମୁଣ୍ଡ ତଳକୁ କରି ସେ ମନ ଦୁଃଖରେ ଘରକୁ ଫେରିଲା । ବାଟରେ କେତେ କ'ଣ ଭାବିଲା । ନିଜ ଭାଗ୍ୟକୁ ନିନ୍ଦା କଲା ।

ତା'ର ମନେ ପଡ଼ିଗଲା, ଭଗବାନ ସିନା ଠେକୁଆକୁ ଲମ୍ବା ଲମ୍ବା ଗୋଡ଼ ଦେଇଛନ୍ତି ବୋଲି ସେ ଡେଇଁ ଡେଇଁ ଶୀଘ୍ର ଦୌଡ଼ି ପଳାଇ ଯାଉଛି । ସେ କ'ଣ ମୋ ଭଳି ପାଣି, କାଦୁଅ କି ନଈ ନାଳକୁ ସହଜରେ ପାରି ହେଇ ଯାଇ ପାରିବ ? ମୋତେ ବି ଭଗବାନ ପାଣିରେ ପହଁରିବା ପାଇଁ ପାଦରେ ଆହୁଲା ଲଗାଇ ଦେଇଛନ୍ତି । ସେହି ଆହୁଲା ସାହାଯ୍ୟରେ ମୋତେ ଜିତିବାକୁ ହେବ । ଠେକୁଆ ତ ମୋ ଭଳି କେବେ ବି ପହଁରି ପାରିବ ନାହିଁ । ଠିକ୍ ଅଛି, ଆସନ୍ତାକାଲି ପୁଣି ଥରେ ପ୍ରତିଯୋଗିତା ହେବ । ଦେଖାଯିବ କିଏ ଜିତୁଛି ।

ତା'ପର ଦିନ ସକାଳୁ ସକାଳୁ କଇଞ୍ଛ ଯାଇ ଠେକୁଆ ଘରେ ପହଞ୍ଚି କହିଲା-' ଠେକୁଆ ଭାଇ ! ସତରେ ମୋତେ ପ୍ରତିଯୋଗିତାଟା ଭାରି ମଜା ଲାଗୁଛି । ଆଜି ପୁଣି ଥରେ ଆମେ ଦୌଡ଼ିବା' ।

କଇଞ୍ଛ କଥା ଶୁଣି ଠେକୁଆ ଭାବିଲା, ''ଇଏ ତ ନିପଟ ବୋକାଟାଏ । ଥରେ ମୁଁ ଶୋଇ ପଡ଼ିଥିଲି ବୋଲି ତା'ର ସୁଯୋଗ ନେଇ ସେ ଜିତି ଯାଇଥିଲା । ଭାବୁଛି, ପୁଣି ଥରେ ଜିତିଯିବ । ସେକଥା ତାକୁ କରିବାକୁ ଦେବ ନାହିଁ । ବରଂ ଏଥରକ ପୁଣି ଥରେ ତାକୁ

ହରେଇବାକୁ ମୋତେ ସୁଯୋଗ ମିଳିଯିବ'' । ତେଣୁ ସେ ସଙ୍ଗେ ସଙ୍ଗେ ତା' କଥାରେ ରାଜି ହେଇଗଲା ।

କଇଞ୍ଛ କହିଲା -'ଦେଖ ଭାଇ! ଗତ ଦୁଇଥର ପ୍ରତିଯୋଗିତାର ଲକ୍ଷ୍ୟ ସ୍ଥଳ ତମ ଇଚ୍ଛାରେ ସ୍ଥିର ହେଇଥିଲା । ଏଥରକ ଲକ୍ଷ୍ୟସ୍ଥଳ ପଶ୍ଚିମ ଦିଗରେ ଥିବା ଖଜୁରି ଗଛ ରହିବ । ଯିଏ ଆଗ ଯାଇ ଖଜୁରି ଗଛକୁ ଛୁଇଁ ପାରିବ, ସିଏ ହିଁ ଜିତିବ' ।

ତୃତୀୟ ଥର ପାଇଁ ପ୍ରତିଯୋଗିତା ଆରମ୍ଭ ହେଲା । ଆନନ୍ଦ ମନରେ ଠେକୁଆ ଡେଇଁ ଡେଇଁ ଖଜୁରି ଗଛ ଆଡ଼କୁ ଦୌଡ଼ିଲା । ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପୂର୍ବରୁ ଗୋଟାଏ କାଦୁଅ ପାଣି ଥିବା ନାଳ ଦେଖି ସେଇଠି ଅଟକି ରହିଗଲା । କିଛି ଉପାୟ ନପାଇ ସେ ଏପଟ ସେପଟ ହେଉଥାଏ ।

କେତେ ସମୟ ପରେ କଇଞ୍ଛ ତା'ର ଛୋଟ ଛୋଟ ପାଦରେ ଚାଲି ଚାଲି ଯାଇ ସେଇଠି ପହଞ୍ଚିଗଲା । ଠେକୁଆ ଆଡ଼କୁ କଣେଇ ଚାହିଁ ଟିକେ ହସିଦେଲା । ନିର୍ଭୟରେ ନାଳ ଭିତରକୁ ଖପ୍ କରି ଡେଇଁ ପଡିଲା । ଚାହୁଁ ଚାହୁଁ ସେ ନାଳ ପାରି ହେଇ ସେପଟେ ଥିବା ଖଜୁରି ଗଛକୁ ଛୁଇଁ ଦେଲା । ଏପଟଟେ ଥାଇ ଠେକୁଆ ନିଜର ହାରକୁ ମାନି ନେବାକୁ ବାଧ୍ୟ ହେଲା । ତା'ର ମନକୁ ୯ଥର ଖୁବ୍ ବେଶି ବାଧିଲା । ସେ ନିରୁପାୟ ହୋଇ ମନଦୁଃଖରେ ଘରକୁ ଫେରିଲା ।

କଇଞ୍ଛ ଜିତି ଯାଇଥିବାରୁ ତା'ର ମନରେ ଗର୍ବ ଆସି ଯାଇଥାଏ । ସେ ଆନନ୍ଦ ମନରେ ବହେ ନାଚିଲା । ବାଟରେ ସାଙ୍ଗ ସାଥୀମାନଙ୍କୁ ତା'ର ଜିତିବା କଥା କହି କହି ବହୁତ ରାତିରେ ଘରକୁ ଫେରିଲା ।

କଇଞ୍ଛ ଭଳି ଗୋଟାଏ ମଠୁଆ ଜୀବ ସହିତ ପ୍ରତିଯୋଗିତା କରି ତା'ଠାରୁ ପୁଣି ହାର ମାନି ଥିବାରୁ ଠେକୁଆ ଦୁଃଖରେ ଭାଙ୍ଗି ପଡ଼ିଥିଲା । ରାତିରେ ତାକୁ ନିଦ ହେଲାନାହିଁ । ଅପମାନ ଆଉ ଲାଜରେ ସେ କେମିତି କାହାକୁ ମୁହଁ ଦେଖେଇବ ? କେତେ ଚିନ୍ତା ଆସି ତା' ମୁଣ୍ଡରେ ପଶିଲା । ସେ କେମିତି ଏ' ଲଜ୍ଜାରୁ ରକ୍ଷା ପାଇ ପାରିବ, ସେ ଉପାୟ ଖୋଜି ଚାଲିଲା । କଥାରେ ଅଛି, ''ମନ ଥିଲେ ଉପାୟ ବଳେ ବଳେ ଆସେ । ଅବସ୍ଥା ଦେଖି ବ୍ୟବସ୍ଥା କରିବାକୁ ହେବ''। ଠିକ୍ ସମୟରେ ଠେକୁଆ ମୁଣ୍ଡରେ ବୁଦ୍ଧିଟାଏ ଜୁଟିଗଲା । ସେ ସକାଳୁ ଉଠି କଇଞ୍ଛ ପାଖରେ ପହଞ୍ଚି ଗଲା । ଆଉ ଥରେ ପ୍ରତିଯୋଗିତା କରିବାକୁ କହିଲା ।

ଠେକୁଆର କଥା ଶୁଣି କଇଞ୍ଛ ଭାବିଲା, ଏଥର ଜାଗା ବଦଳେଇବାକୁ ଠେକୁଆ ଅନୁରୋଧ କରିପାରେ । ତେଣୁ ସେ ଆଗତୁରା କହି ପକାଇଲା-' ଠେକୁଆ ଭାଇ! ମୁଁ ଆଜି ବି ଦଉଡ଼ିବାକୁ ରାଜି ଅଛି । କିନ୍ତୁ ଜାଗା ବଦଳିବ ନାହିଁ' ।

ଠେକୁଆ କହିଲା-' ଠିକ୍ ଅଛି । ସେହି ଖଜୁରି ଗଛକୁ ହିଁ ଆମକୁ ଛୁଇଁବାକୁ ହେବ' ।

ଆଗଥର ପରି ଏଥର ଠେକୁଆ ଆଗତୁରା ଡେଇଁ ଡେଇଁ ଗଲାନାହିଁ । ଧୀରେ ଧୀରେ ସେ କଇଞ୍ଛ ପାଖେ ପାଖେ ଚାଲୁଥାଏ । କଇଞ୍ଛ ହସ ହସ ମୁହଁରେ ଡଗ ଡଗ ହେଇ ଆଗକୁ ମାଡ଼ି ଚାଲିଥାଏ । ସେ ଭାବିଥାଏ, ମୁଁ ତ ନିଶ୍ଚୟ ଜିତିବି । ତେଣୁ ଠେକୁଆ ଦୌଡ଼ିବାକୁ ଭୟକରି ସାରିଲାଣି ।

କିଛି ସମୟ ପରେ ଦୁହେଁ ଯାକ ନାଳ ପାଖରେ ପହଞ୍ଚିଗଲେ । କଇଞ୍ଛର ମନ ବହୁତ ଖୁସିଥାଏ । ସେ ଖପ୍ କରି ପାଣି ଭିତରକୁ ଡେଇଁ ପଡ଼ିଲା । ଚାରି ଗୋଡ଼ର ଆହୁଲା ମାରିବା ଆରମ୍ଭ କରିଦେଲା । ଠିକ୍ ସମୟ ଦେଖି ଠେକୁଆ ମାରିଲା ଗୋଟାଏ ଡିଆଁ । ଲଥ୍ କରି ସେ ଯାଇ କଇଞ୍ଛ ପିଠିରେ ବସି ପଡ଼ିଲା । କଇଞ୍ଛ ନାଳ ମଝିରେ ହେଇଛି କି ନାହିଁ, ଠେକୁଆ ପୁଣି କୁଦାଟାଏ ମାରି ନାଳର ସେପଟେ ପହଞ୍ଚିଗଲା ।

କଇଞ୍ଛ ନାଳରୁ ଉଠି ଦେଖିଲା ବେଳକୁ ଠେକୁଆ ଯାଇ ଖଜୁରି ଗଛକୁ କୁଣ୍ଢେଇ ହାଃ ହାଃ କରି ହସୁଛି ।





# ଚତୁର କାଉ ବୁଦ୍ଧି ଶିଖିଲା :

**ଆମେ ପଢ଼ିଥିଲୁ-**

ଖରାଦିନେ କାଉଟିଏ ପାଣି ଖୋଜି ଖୋଜି ଥକି ପଡ଼ିଥିଲା । ଗାଆଁ ମୁଣ୍ଡରେ ଗୋଟାଏ କଳସୀରେ ଖୁବ୍ କମ୍ ପାଣିଥିବା ଦେଖି ଥଣ୍ଟକୁ ବଢ଼େଇଲା । ପାଣି ପାଖକୁ ତା'ଥଣ୍ଟ ପାଇଲା ନାହିଁ । ସେ ପଦାରେ ପଡ଼ିଥିବା ଗୋଡ଼ି ଖୁଣ୍ଟି ଆଣି କଳସୀ ଭିତରକୁ ପକାଇଲା । ପାଣି ଉପରକୁ ଉଠିବାରୁ ସେ ତାକୁ ପିଇ ଆନନ୍ଦରେ ଉଡ଼ି ଚାଲି ଯାଇଥିଲା । ତେଣୁ ସେ କାଉକୁ ସମସ୍ତେ ଚତୁର କାଉ କହିଲେ ।

**ତା'ପରେ କ'ଣ ହେଲା ଜାଣିଛ ?**

ପୁଣି ଥରେ ଖରାଦିନ ଆସିଲା । ଚତୁର୍ କାଉର ଭଣଜା ସହରୀ କାଉ ଦିନେ ମାମୁଘରକୁ ବୁଲି ଆସିଥିଲା । ଦେଖିଲା, ତା'ମାମୁ କାଉ ଅନ୍ୟ କାଉମାନଙ୍କୁ ପାଣି ପିଇବାର କୌଶଳ ଶିଖାଇ ଦେଉଛି । କାଉମାନେ ଉଡ଼ି ଉଡ଼ି ଯାଇ ଗୋଡ଼ି ଖୁଣ୍ଟି ଆଣି ମାଠିଆ ଓ ସୁରେଇ ଭିତରକୁ ପକାଉଛନ୍ତି । ପାଣି ଉପରକୁ ଉଠିଲେ, ତାକୁ ପିଇ ଖୁସିରେ ନାଚି ଉଠୁଛନ୍ତି ।

ସହରୀ କାଉ ତାଙ୍କର ପାଣି ପିଇବା ଢଙ୍ଗ ଦେଖି ହସି ହସି ଗଡ଼ିଗଲା । ତା'ମାମୁ ଚତୁର କାଉକୁ ଡାକି କହିଲା-'ମାମୁ! ଯୁଗ ଯାଇ କେଉଁଠି ପହଞ୍ଚିଲାଣି, ତମେମାନେ ଏତେ ପଛରେ ରହିଛ ବୋଲି ମୁଁ ଜାଣି ନଥିଲି । ଆଜି କାଲି ଚାରିଆଡ଼େ ପିଲାଛୁଆଙ୍କଠାରୁ ଆରମ୍ଭ କରି ବଡ଼ ମଣିଷଙ୍କ ପର୍ଯ୍ୟନ୍ତ ସମସ୍ତେ କେମିତି ବୋତଲରୁ ପାଣି ପିଉଛନ୍ତି, ତମେ କ'ଣ କେବେ ଦେଖିନା? ନଳି ଖଣ୍ଡିଏ ଯୋଗାଡ଼ କରିଦେଲେ ତ କାମ ସରିଲା । ଥଣ୍ଟରେ ନଳିକୁ ଧରି ଦୂରରେ ଥିବା ପାଣିରେ ଲଗେଇ ଶୋଷି ଦେଲେ ତ ହେଲା । ଏଣିକି ନିଜ ବସାରେ ନଳି ଖଣ୍ଡିଏ ଲେଖାଁ ରଖ । ଆଉ ତମକୁ ପାଣି ଠୋପାଏ ପାଇଁ ଦିନଯାକ ଗୋଡ଼ି ପଥର ବୋହିବାକୁ ପଡ଼ିବ ନାହିଁ ।

ମାମୁ ଗାଆଁର କାଉମାନେ ଭଣଜା କାଉର କଥା ଶୁଣି ଖୁସି ହେଇଗଲେ । ନିଜ ନିଜ ଭିତରେ କଥା ହେଲେ, 'ସତରେ ଯୁଗ ସହିତ ତାଳ ଦେଇ ଆମକୁ ନୂଆ ନୂଆ ଢଙ୍ଗରେ କାମ ଉଠେଇବାକୁ ହେବ । ନହେଲେ ଆମେ ସବୁ ପଛୁଆ ହେଇ ରହିଯିବା । ଚତୁର କାଉ ଭଳି ଆମେ ପାଣି ପିଇବା ପାଇଁ ଦିନ ଯାକ ଖାଲି ଗୋଡ଼ି ପଥର ବୋହୁଥିବା । ଆଜି ଭଣଜା କାଉ ଆମକୁ ଯେଉଁ ବୁଦ୍ଧି ଶିଖେଇ ଦେଇଛି, ତାକୁ ସମସ୍ତଙ୍କୁ କହିଦେବା । ଅଳ୍ପ କଷ୍ଟରେ କେମିତି ଶୀଘ୍ର ଅଧିକ କାମ ହେଇ ପାରୁଛି । ତାକୁ ଆମେ ଦେଖି ଶିଖିଲେ, ଚତୁର କାଉରୁ ବୁଦ୍ଧିଆ କାଉ ହେଇ ପାରିବା' ।

ମାମୁ ଗାଆଁର କାଉମାନଙ୍କ କଥା ଶୁଣି ଭଣଜା କାଉ ଖୁସି ମନରେ କା- କା- ଡାକି ନିଜ ଘରକୁ ଉଡ଼ି ଚାଲିଗଲା । ମାମୁ କାଉ ଭଣଜାର ବୁଦ୍ଧିକୁ ବହୁତ ପ୍ରଶଂସା କରି କହିଲା- 'ଆରେ, ସେ ପରା ଆମ ଗାଆଁ ଭଣଜା । ସହରରେ ରହି ବହୁତ କଥା ସେ ଜାଣି ଯାଇଛି । ଏଥର ମୁଁ ତାଙ୍କ ଘରକୁ ଗଲେ, ଆହୁରି କେତେ ନୂଆ କୌଶଳ ତା'ଠାରୁ ଶିଖି ଆସିବି । ବୁଦ୍ଧି ବଳରେ କାମ ଉଠେଇ ପାରିଲେ, ଆଉ ଆମେ ବୋକା ହେଇ ରହିବା ନାହିଁ' ।

ଚତୁର କାଉ କଥାରେ ସମସ୍ତେ ରାଜି ହେଇଗଲେ ।






# କାଠୁରିଆ ଓ ଜଳ ଦେବତା

**ଆମେ ପଢ଼ିଥିଲୁ-**

ଥରେ ଜଣେ କାଠୁରିଆ ନଈ କୂଳରେ ଥିବା ଶୁଖିଲା ଗଛରୁ କାଠ କାଟୁଥିଲା । ହଠାତ୍ ତା'କୁରାଢ଼ିଟି ପାଣିରେ ଖସିଗଲା । କାଠୁରିଆ ନିଜର କୁରାଢ଼ିଟିକୁ ହରେଇ ମନ ଦୁଃଖରେ ଭାଙ୍ଗି ପଡ଼ିଲା । ବିଚରା କିଛି ଉପାୟ ନପାଇ ଗଛ ମୂଳେ ବସି କଇଁ କଇଁ ହେଇ କାନ୍ଦିଲା । ତା' ଦୁଃଖକୁ ସହି ନପାରି ଜଳ ଦେବତା ନଈରୁ ବାହାରିଲେ । ତାକୁ ପରୀକ୍ଷା କରିବା ପାଇଁ ସେ ଗୋଟାଏ ସୁନାରେ ତିଆରି କୁରାଢ଼ି ଦେଖାଇ କହିଲେ- 'ଏଇଟା ଯଦି ତମର ହେଇଥାଏ, ତେବେ ନେଇଯାଅ' ।

କାଠୁରିଆ ଜଣକ ସତ୍ୟବାଦୀ ଓ ନିରୀହ ମଣିଷ ଥିଲା । ସେ ସୁନା କୁରାଢ଼ି ତା'ର ନୁହେଁ ବୋଲି କହିଦେଲା । ଜଳ ଦେବତା ଆଉ ଗୋଟାଏ ରୂପାରେ ତିଆରି କୁରାଢ଼ି ଦେଖାଇ ଆଗଥର ପରି କହିଲେ । ଏଥର ବି କାଠୁରିଆ ଏ'ରୂପାରେ ତିଆରି ଜିନିଷ ତା'ର ନୁହେଁ ବୋଲି କହିଲା ।

ଶେଷରେ ଜଳ ଦେବତା ଲୁହାରେ ତିଆରି କୁରାଢ଼ି ଦେଖାଇଲେ । କାଠୁରିଆ ତା'ର ନିଜ କୁରାଢ଼ିଟିକୁ ଚିହ୍ନି ପାରି ସେହିଟିକୁ ନେବାକୁ ମାଗିଲା ।

ଜଳଦେବତା କାଠୁରିଆର ସଚ୍ଚୋଟ ପଣିଆ ଓ ନିର୍ଲୋଭ ଗୁଣ ଦେଖି ତାକୁ ନିଜର ପରିଚୟ ଦେଲେ । ତିନୋଟି ଯାକ କୁରାଢ଼ି ତାକୁ ଦେଇ ଉଭାନ ହେଇଗଲେ ।

**ତା'ପରେ କ'ଣ ହେଲା ଜାଣିଛ ?**

ସୁନା ଓ ରୁପାରେ ତିଆରି କୁରାଢ଼ିକୁ ନେଇ କାଠୁରିଆଟି ବଜାରରେ ବିକି ବହୁତ ଟଙ୍କାପାଇଲା । ସେହି ଟଙ୍କାରେ ଗୋଟାଏ କାଠଗୋଲା ତିଆରି କଲା । କାଠୁରିଆମାନେ ଜଙ୍ଗଲରୁ କାଠ କାଟି ଆଣି ତା' ପାଖରେ ଜମା କଲେ । ଅନ୍ୟମାନେ ସେଇଠୁ କାଠ କିଣିଲେ । ସେ ଧୀରେ ଧୀରେ ଧନୀ ହେଇଗଲା ।

ଦିନେ କାଠୁରିଆ ତା' ସ୍ତ୍ରୀ ପାଖରେ ନିଜର ସଫଳତାର କାହାଣୀ କହିଦେଲା । ସବୁ କଥା ଶୁଣିସାରି ତା'ସ୍ତ୍ରୀ ସେହି ନଈ କୂଳରେ ଥିବା ଅଧା କଟା ଗଛକୁ ନଦେଖିଲେ , ତା' କଥାକୁ ବିଶ୍ୱାସ କରିବ ନାହିଁ ବୋଲି କହିଲା ।

କାଠୁରିଆ ତା' କଥାରେ ରାଜି ହେଇ ତାକୁ ନଈ କୂଳକୁ ନେଲା । ସେ କେମିତି ଗଛରେ ଚଢ଼ି କାଠ କାଟୁଥିଲା , ସେ କାମ କରି ଦେଖେଇ ଦେଲା । କାଠୁରିଆର ସ୍ତ୍ରୀ କହିଲା- ' ତମକୁ ଯେଉଁ ଜଳ ଦେବତା ଦେଖା ଦେଇଥିଲେ, ତାଙ୍କୁ ଟିକେ ମୋତେ ଦେଖେଇ ଦିଅ । ନହେଲେ ତମ କଥାକୁ ମୁଁ ମୋଟେ ବିଶ୍ୱାସ କରି ପାରିବି ନାହିଁ । ତମେ ଜଣେ ମିଛୁଆ ଲୋକ , ମୋତେ ଗାଲୁ ଗପ କହୁଛ ବୋଲି ଜାଣିବି' ।

କାଠୁରିଆ ବିଚରା ନଈ କୂଳକୁ ଯାଇ ଜଳ ଦେବତାଙ୍କୁ ଦେଖା ଦେବାକୁ ପ୍ରାର୍ଥନା କଲା । ଏତିକି ବେଳେ ତା' ସ୍ତ୍ରୀ ନଈ କୂଳରେ ଠିଆ ହେଇ ଥିଲା , ତା'ର ଗୋଡ଼ ଖସିଗଲା । ଚାହୁଁ ଚାହୁଁ ସୁଅରେ ଭାସି ଯାଇ ସେ ନଈ ମଝିରେ ବୁଡ଼ିଗଲା ।

କାଠୁରିଆ ବିକଳ ହେଇ ବହୁତ କାନ୍ଦିଲା । ତା'ର ବିକଳ କାନ୍ଦ ସହି ନପାରି ଜଳ ଦେବତା ପୁଣି ଥରେ ଉଭା ହେଇ କହିଲେ-' ମୁଁ ତୋତେ ଚିହ୍ନି ପାରୁଛି । ତୁ ତ ସେହି ସତ୍ୟବାଦୀ କାଠୁରିଆ । କାନ୍ଦୁଛୁ କାହିଁକି ?, ତୋର କ'ଣ ଦରକାର , କହ' ।

କାଠୁରିଆ ଜଳ ଦେବତାଙ୍କୁ ଚିହ୍ନିପାରି କହିଲା -'ପ୍ରଭୁ! ଆପଣ ତ ଅନ୍ତର୍ଯ୍ୟାମୀ । ଆପଣଙ୍କୁ ଆଉ କ'ଣ କହିବି? ମୋତେ କେବଳ ମୋ ସ୍ତ୍ରୀକୁ ଫେରାଇ ଦିଅନ୍ତୁ' ।

ଜଳ ଦେବତା ଆଗଥର ପରି ପାଣିରେ ବୁଡ଼ି ଯାଇ, ଜଣେ ସୁନ୍ଦରୀ ପରୀକୁ ଧରି ବାହାରି ଆସିଲେ । କହିଲେ-'ଦେଖ ଇଏ ତମରି ସ୍ତ୍ରୀ ହେଇଥିଲେ, ସାଙ୍ଗରେ ନେଇ ଚାଲିଯାଅ' ।

ସତ୍ୟବାଦୀ କାଠୁରିଆର ମନେ ପଡ଼ିଗଲା, ଜଳ ଦେବତା ତାକୁ ଥର ଥର କରି ପରୀକ୍ଷା କରି ଶେଷରେ ତିନୋଟି ଯାକ କୁରାଢ଼ି ଦେଇଥିଲେ । ଏଥର ବି ସେଇୟା ହେବାକୁ ଯାଉଛି । ତେଣୁ ସେ ତରବର ହେଇ କହି ପକାଇଲା- ହଁ, ପ୍ରଭୁ! ଏଇ ଏକା ମୋ ସ୍ତ୍ରୀ' । ତାକୁ ମୋତେ ଦେଇ ଦିଅନ୍ତୁ' ।

କାଠୁରିଆର କଥା ଶୁଣି ଜଳ ଦେବତା ରାଗିଗଲେ । ଏଭଳି ମିଛକଥା ତୁ କାହିଁକି କହିଲୁ ବୋଲି ତାକୁ ପଚାରିଲେ ।

ସତ୍ୟବାଦୀ କାଠୁରିଆ ଦୁଇହାତ ଯୋଡ଼ି କହିଲା-' ପ୍ରଭୁ! ଆପଣ ସମସ୍ତଙ୍କ ମନକଥା ଜାଣି ପାରନ୍ତି । ମୁଁ ଯଦି ଏବେ ନା ବୋଲି କହି ଦେବି, ଆପଣ ଆହୁରି ଦୁଇଟି ସ୍ତ୍ରୀଲୋକ ଆଣି ଦେଖାଇବେ । ଶେଷରେ ତିନୋଟି ଯାକ ସ୍ତ୍ରୀଙ୍କୁ ମୋତେ ଦେଇଦେବେ । ଗୋଟିଏ ସ୍ତ୍ରୀ ମୋତେ କି ହଇରାଣ କରୁଛି, ତାକୁ ତ ଆପଣ ଦେଖୁଛନ୍ତି, ତିନି ତିନିଟା ସ୍ତ୍ରୀଙ୍କୁ ନେଇ ମୁଁ ସମ୍ଭାଳି ପାରିବି ନାହିଁ । ତେଣୁ ମୁଁ ମିଛ କହି ଦେଇଛି । ମୋତେ କ୍ଷମା କରି ଦିଅନ୍ତୁ । ଏଇ ଗୋଟିଏ ସ୍ତ୍ରୀ ମୋ ପାଇଁ ଯଥେଷ୍ଟ' ।

ଜଳ ଦେବତା କାଠୁରିଆର କଥା ଶୁଣି ଖୁସି ହେଇଗଲେ । ସେ ପାଣିରେ ବୁଡ଼ିଯାଇ କାଠୁରିଆର ଅସଲ ସ୍ତ୍ରୀକୁ ନେଇ ଆସିଲେ । ତାକୁ କାଠୁରିଆର ହାତରେ ଧରେଇ ଦେଇ ଉଭାନ ହେଇଗଲେ ।





## ବିଲେଇ କଳି

**ଆମେ ପଢ଼ିଥିଲୁ-**

ଥରେ ଦୁଇଟି ବିଲେଇ ଗୋଟିଏ ପିଠାକୁ ନେଇ ଝଗଡ଼ା ଲାଗିଲେ । ପିଠାକୁ ସମାନ ଭାଗ କରିଦେବା ପାଇଁ ଗୋଟାଏ ମାଙ୍କଡ଼କୁ ଡାକିଲେ । ଚତୁର ମାଙ୍କଡ଼ଟା ନିକିତି ଆଣି ସମାନ ସମାନ ବାଣ୍ଟି ଦେବାର ଅଭିନୟ କରି ସବୁତକ ପିଠାକୁ ଖାଇ ଦେଇଥିଲା । ଦୁଇଜଣଙ୍କ କଳିରୁ ମାଙ୍କଡ଼ର ହିଁ ଲାଭ ହୋଇଥିଲା ।

**ତା'ପରେ କ'ଣ ହେଲା ଜାଣିଛ ?**

ଚତୁର ମାଙ୍କଡ଼ଟି ସବୁତକ ପିଠା ଖାଇସାରି ଗଛ ଉପରକୁ ଚାଲିଗଲା । ବିଲେଇ ଦୁଇଜଣ କାନମୁଣ୍ଡା ଆଉଁସି ହେଲେ । କେହି କାହାକୁ କିଛି କହି ନପାରି ବିକଳ ହୋଇ ପରସ୍ପରକୁ ଚାହିଁ ରହିଲେ । ଗଛ ଉପରେ ଥାଇ ମାଙ୍କଡ଼ କହିଲା- 'କ'ଣ ବିଲେଇ ନାନୀ ! ତମେ ଦି'ଜଣ ମନଦୁଃଖ କରୁଛ କି ? ଯାହା ତ ହେବାର ଥିଲା, ହୋଇ ଗଲାଣି । ଆଉ ମନ ଦୁଃଖ କରି ଲାଭ ନାହିଁ । ପିଠାକୁ

ଓଜନ କରୁ କରୁ ତ ଶେଷ ହେଇଗଲା । ଏଥିରେ ଆମର କାହାରି କିଛି ଦୋଷନାହିଁ । ଏଣିକି ପିଠା ଆଣିଲେ, ଆମେ ଆଉ ନିକିତିରେ ଓଜନ କରିବା ନାହିଁ । ବରଂ ପିଠା ସହିତ ଖଣ୍ଡିଏ ସ୍କେଲ୍ ଆଣିବ । ମୁଁ ତା'ର ଲମ୍ବା ଚଉଡ଼ା ଠିକ୍ ଭାବରେ ମାପ ଚୁପକରି କାଟିକି ରଖିଥିବି । ତମେ ଦି'ଜଣ ଆସନରେ ବସି ଆନନ୍ଦ ମନରେ ଖାଇବ' ।

ମାଙ୍କଡ଼ର ଚାଲାକି କଥା ଶୁଣି କାଳି ବିଲେଇ ଧଳି ବିଲେଇ କାନରେ କହିଲା-'ଏ' ବଦମାସ ମାଙ୍କଡ଼ ଆମକୁ ଠକି ଦେଇଛି । ଆମେ ଆଉ କେବେ ତାକୁ ବିଶ୍ୱାସ କରିବା ନାହିଁ । କେତେ କଷ୍ଟରେ ଲୁଚେଇ ଛପେଇ ଆଣିଥିବା ପିଠାକୁ ସେ ଏକା ଖାଇଦେଲା । ଆମେ ଦି'ଜଣ ବୋକୀ ପାଲଟି ଗଲେ' ।

ଧଳି ବିଲେଇ ଫିସ୍ ଫିସ୍ କରି କହିଲା-' ସତରେ ନାନୀ ! ମୋତେ ଭାରି ବାଧିଛି । ମାଙ୍କଡ଼କୁ କେମିତି ଭଲକି ପାନେ ଦେବାର ବ୍ୟବସ୍ଥା କର । ଆମେ ତ ଭୁଲ୍ କରି ପରସ୍ପର ଭିତରେ ଝଗଡ଼ା ଲାଗିଲେ । ମାଙ୍କଡ଼ଟା ଆମକୁ ଠକିଦେଲା । ଆମେ ଏ' ଲାଜ କଥାଟାକୁ ଆଉ କେଉଁଠି ପ୍ରଘଟ କରିବା ନାହିଁ । ବରଂ ଠକକୁ ଉପଯୁକ୍ତ ଦଣ୍ଡ ଦେବାର ଉପାୟ ବାହାର କରିବା' ।

ମନଦୁଃଖରେ ବିଲେଇ ଦୁଇଜଣ ସେଇଠୁ ଚାଲିଗଲେ । ସେମାନେ ପିଠାକଳି କଥାକୁ ଭୁଲି ପାରୁ ନଥା'ନ୍ତି । ମାଙ୍କଡ଼କୁ ମଜା ଚଖେଇବାକୁ ଉପାୟ ଖୋଜୁଥା'ନ୍ତି ।

ଦିନେ କାଳି ବିଲେଇ ହସ ହସ ମୁହଁରେ ଆସି ଧଳି ବିଲେଇକୁ କହିଲା-'ନାନୀ ! ଉପାୟଟା ମିଳିଗଲା । ମୁଁ ଯାଉଛି, ମାଙ୍କଡ଼କୁ ଡାକି ଆଣିବି । ସେ ଆମର ପିଠାକୁ ମାପ ଚୁପ କରିବ । ତୁ ଯା' ଘର ମାଲିକ ପୁଅର ପଢ଼ାଘରୁ କେବଳ ସ୍କେଲ୍‌ଟାକୁ ନେଇ ଆସିବୁ, କାମଟା ହେଇଯିବ' ।

କାଳିର ବୁଦ୍ଧିକୁ ଧଳି ଭଲକରି ଜାଣେ । ସେ ଆଉ କିଛି ନ ପଚାରି ସିଧା ଚାଲିଲା, ସ୍କେଲ ଆଣିବାକୁ । ସ୍କେଲଟିକୁ ଦାନ୍ତରେ କାମୁଡ଼ି ଧରି ଧଳି ବିଲେଇ ମାଙ୍କଡ଼ର ଆସିବା ବାଟକୁ ଚାହିଁ ରହିଲା ।

ପିଠାକୁ ମାପଚୁପ କରିବାକୁ ସଜବାଜ ହେଇ ମାଙ୍କଡ଼ ଆସି ସେଇଠି ପହଞ୍ଚିଗଲା ।

କାଳି ବିଲେଇ କହିଲା-'ମାଙ୍କଡ଼ ନନା ! ହେଇ ଦେଖ, କଂସା ତଳେ ମୁଁ ପୋଡ଼ ପିଠାକୁ ଲୁଚେଇ ରଖି ଦେଇଛି । ଧଳିଠାରୁ ସ୍କେଲ୍‌ଟିକୁ ନିଅ । ଠିକ୍ ଭାବରେ ମାପଚୁପ କର । ଆମେ ଦି'ଜଣ ବାହାରେ ଅପେକ୍ଷା କରିଛୁ । ସମାନ ଦୁଇ ଭାଗ କରି ସାରିଲେ, ଆମକୁ ଡାକିବ' ।

କଥାରେ ଅଛି-'ରୋଗୀ ଖୋଜୁଥିଲା ଯାହା, ବଇଦ ବତେଇଲା ତାହା' । ମାଙ୍କଡ଼ ସବୁତକ ପିଠାକୁ ଖାଇବାକୁ ନିରୋଳା ଜାଗା ଖୋଜୁଥିଲା । ବିଲେଇ କଥା ସରିଛି କି ନାହିଁ, ମାଙ୍କଡ଼ କହିଲା- ' ତମେ ଠିକ୍ କଥା କହିଛ । ମୁଁ ଭାଗ କରି ସାରିଲେ, ତମକୁ ନିଶ୍ଚୟ ଡାକିବି । ତମେ ପଦାରେ ଥାଅ' ।

ବିଲେଇ ଦି'ଜଣ ସେଠାରୁ ଚାଲିଗଲା ପରେ ମାଙ୍କଡ଼ କଂସାକୁ ଟେକି ପିଠା ଉପରେ ସ୍କେଲକୁ ଲଗେଇ ଦେଲା ।

ଆରେ ! ଇଏ କ'ଣ? ପିଠା ପରି ଦିଶୁଥିବା ଜିନିଷ ତ ଗୋଟାଏ ବଡ଼ ବିରୁଡ଼ି ବସାଟାଏ । ଦେଖୁ ଦେଖୁ ସେଥିରୁ ପଚାଶ ଖଣ୍ଡ ବିରୁଡ଼ି ବାହାରି ଆସିଲେ । ମାଙ୍କଡ଼କୁ ଗଡ଼େଇ ତଡ଼େଇ କାମୁଡ଼ି ଚାଲିଲେ । ମାଙ୍କଡ଼ ଆଉକି ସେଇଠି ରହେ ? ଜୀବନ ବିକଳେ ଧାଇଁଲା, ଗଛ ଉପରକୁ । ବିରୁଡ଼ିମାନେ ତ ଆଗରୁ ରାଗିକରି ଥିଲେ, ସେମାନେ ଗୋଡ଼େଇ ଗୋଡ଼େଇ ତାକୁ କାମୁଡ଼ି ଚାଲିଲେ । ମାଙ୍କଡ଼ ଏ'ଗଛରୁ ସେଗଛ ଡେଇଁ ଡେଇଁ ସବୁଦିନ ପାଇଁ ଗାଆଁ ଛାଡ଼ି ବଣକୁ ପଳାଇ ଗଲା ।

ବିଲେଇ ଦି'ଜଣ ଦୂରରୁ ଥାଇ ମାଙ୍କଡ଼ର ପିଠାଖିଆ ମଜା ଦେଖି ଆନନ୍ଦରେ ନାଚୁଥିଲେ ।





# ଓଟ ଓ ବିଲୁଆ

**ଆମେ ପଢ଼ିଥିଲୁ-**

ଥରେ ବିଲୁଆର ଆଖୁ ଖାଇବାକୁ ଭାରି ଇଚ୍ଛା ହେଲା । ସେ ଓଟକୁ କହି ତା'ପିଠିରେ ବସି ନଇ ସେପାରିକୁ ଯାଇଥିଲା । ଆଖୁ ଖାଇ ସାରି ହୁକେ ହୋ କଲା । ଆଖୁ ଚାଷୀ ଆସି ଓଟକୁ ଦେଖି ବହେ ବାଡ଼େଇଲେ । ବିଲୁଆ ଓଟକୁ କହିଲା,' ମୁଁ ଖାଇ ସାରିଲେ, ଅଭ୍ୟାସ ବଶତଃ ଟିକେ ହୁକେ ହୋ କରିଦିଏ । ସେଇଥି ପାଇଁ ଆଜି ତମକୁ ମାଡ଼ ଖାଇବାକୁ ପଡ଼ିଲା' ।

ନଇ ପାରି ହେଲାବେଳେ ଓଟ ତା'ର କୁଜକୁ ହଲେଇ ଦେଲା । ବିଲୁଆକୁ କହିଲା- 'ମୋର ବି ସେଇମିତି ଅଭ୍ୟାସ ଅଛି । ଖାଇ ସାରି ପାଣିରେ ପଶିଲେ ମୋର କୁଜଟା ହଲେ । କୁଜଟା ଅଧିକ ହଲିବାରୁ ବିଲୁଆ ପାଣିରେ ଖସି ପଡ଼ି ଭାସିଗଲା ।

**-ତା'ପରେ କ'ଣ ହେଲା ଜାଣିଛ ?**

ଓଟ ପିଠିରୁ ଖସି ପଡ଼ି ବିଲୁଆ ଦୁଇ ଚାରି ଝଲକା ପାଣି ପିଇ ଉବୁ ଟୁବୁ ହେଲା । ବିକଳ ହେଇ ସେ ଜୀବନ ରକ୍ଷା କରିବାକୁ ଓଟକୁ ଅନୁରୋଧ କଲା । ଆଉ ଏମିତି କେବେ ଭୁଲ କାମ କରିବ ନାହିଁ ବୋଲି ରାଣ ଖାଇଲା ।

ବିଲୁଆର ବିକଳ ସହି ନପାରି ଓଟ ତା' ପାଖକୁ ପହଁରି ଗଲା । ବିଲୁଆ ତା' କୁଜକୁ ଧରି ଜୀବନ ରକ୍ଷା କଲା । ଆଉ ଟିକେ ଡେରି ହେଇଥିଲେ, ବିଲୁଆ ପାଣିରେ ବୁଡ଼ି ମରି ଯାଇଥା'ନ୍ତା ।

ଦୁଷ୍ଟବୁଦ୍ଧି ବିଲୁଆ ସେଦିନର କଥାକୁ ଭୁଲି ପାରି ନଥିଲା । ସେ ସୁବିଧା ଓ ସୁଯୋଗ ଅପେକ୍ଷାରେ ରହିଥାଏ । ନଈ ମଝିଟାରେ ସେ ତାକୁ ବୁଡ଼େଇ ମାରି ଦେବାକୁ ବସିଥିଲା । ଭାଗ୍ୟ ବଳରେ ସେ ସିନା ବଞ୍ଚି ଯାଇଛି । ବୋକା ଓଟକୁ ଆଉ ଥରେ ବୁଦ୍ଧି ନଶିଖେଇଲେ, ଶାନ୍ତିରେ ରହି ହେବନାହିଁ ।

ଏହିପରି ଭାବି ଭାବି ଦିନେ ସେ ଓଟ ପାଖକୁ ଯାଇ କହିଲା- 'ବଡଭାଇ ! ତମର ଉପକାରକୁ ମୁଁ କଦାପି ଭୁଲି ପାରିବି ନାହିଁ । ତମେ ସେଦିନ ମୋତେ ରକ୍ଷା କରି ନଥିଲେ, ମୋର ଛୁଆ ପିଲାମାନେ ଭାସି ଯାଇଥା'ନ୍ତେ । ତମେ ହିଁ ମୋର ତ୍ରାଣକର୍ତ୍ତା । ତେଣୁ ତମର ଉପକାର ସୁଝିବା ମୋର ପ୍ରଥମ କର୍ତ୍ତବ୍ୟ । ତମର ମଙ୍ଗଳ ପାଇଁ ମୁଁ ସବୁବେଳେ ଚିନ୍ତିତ । ମୁଁ ଜାଣେ, ତମେ ଜଣେ ତୃଣ ଭୋଜି ପ୍ରାଣୀ । ତଥାପି କେତେଦିନ ଏମିତି ଶୁଖିଲା ନୀରସ ଘାସ ଖାଇ ବଞ୍ଚି ରହିଥିବ ? ଜୀବନଟାକୁ ଉପଭୋଗ କର । ମିଠା ମିଠା ଫଳ ମୂଳ ଖାଅ, ଆଖୁରସ ପିଅ । ଦେହଟା ପ୍ରତି ଟିକେ ଯତ୍ନ ନିଅ । ମୁଁ ତମର ପାଖେ ପାଖେ ଅଛି । ସବୁ କାମରେ ସାହାଯ୍ୟ କରିବି । ଗତଥର ଆମେ ନଈ ପାରି ହେଇ ଯାଇଥିଲେ ବୋଲି ଅସୁବିଧା ହେଲା । ଏଥର ମୁଁ ଆଉ ଗୋଟାଏ ନୂଆ ଆଖୁବାଡ଼ି ଦେଖି ଆସିଛି ।

ଆଖୁଚାଷୀର ଘର ସେଇଠୁ ବହୁତ ଦୂର । ଆମେ ମନ ଇଚ୍ଛା ଆଖୁ ଖାଇଲେ ବି ସେ ଦେଖି ପାରିବ ନାହିଁ । ମୁଁ ସବୁଦିନ ସଞ୍ଜବେଳେ ଯାଇ ମଜାରେ ପେଟେ ଲେଖା ଆଖୁ ଖାଇକି ଆସୁଛି । ତମେ ମୋ ସାଙ୍ଗରେ ଆଜି ଚାଲ । ମୁଁ କେମିତି ପାଣି ଯାଉଥିବା ବାଟେ ଗଳି ଯାଏ, ଦେଖି ଆସିବ' ।

ବିଲୁଆ କଥାକୁ ଓଟ ମୁକ ଭଳି ଠିଆ ହେଇ ଶୁଣୁଥାଏ । ତା' କଥାକୁ ମୋଟେ ବିଶ୍ୱାସ କରୁ ନଥାଏ । ସେ ଭାବୁଥାଏ, ବିଶ୍ୱାସ ଘାତକ ସ୍ୱାର୍ଥପର ବନ୍ଧୁଙ୍କଠାରୁ ଦୂରେଇ ରହିବା ସବୁଠାରୁ ଭଲ । ଆମ ପଡ଼ିଆର ଘାସ ତ ପରବାଡ଼ିର ଆଖୁଠାରୁ ଢେର ସୁଆଦିଆ । ଏଠି କାହାର ମାଡ଼ର ଭୟନାହିଁ । ମୁଁ କାହିଁକି ସେଠିକି ଯିବି ?

ଓଟ ପାଖରେ ଠିଆ ହେଇ ବିଲୁଆ କଥା କହୁଥିବା ବେଳେ, ସେହି ବାଟ ଦେଇ ଆଖୁ ଚାଷୀ ଦୁଇଜଣ ହାଟରୁ ଫେରୁଥିଲେ । ସେମାନେ ବିଲୁଆର କଥାକୁ ଶୁଣି ସବୁ କଥା ବୁଝିଗଲେ । ସେମାନେ କୁହାକୁହି ହେଲେ, ଏଇ ଦୁଷ୍ଟ ବିଲୁଆ ହିଁ ନାଳ ବାଟେ ପଶି ଆଖୁବାଡିକୁ ନଷ୍ଟ କରୁଛି । ତାକୁ ଫାସ ବସେଇ ଧରିବାକୁ ହେବ ।

ସବୁଦିନ ପରି ସେଦିନ ସଞ୍ଜବେଳକୁ ବିଲୁଆ ଆଖୁ ଖାଇବାକୁ ବାହାରି ପଡ଼ିଲା । ଆଖୁବାଡ଼ି ପାଖରେ ସେ ଓଟକୁ ଖୋଜିଲା । ତାକୁ ନପାଇ ବହେ ଗାଳି ଦେଲା । ଅନ୍ଧାର ହେବାରୁ ସେ ପାଣି ଯିବା ନାଳ ବାଟରେ ମୁଣ୍ଡ ଗଳେଇ ଦେଲା । ଆରେ ଏ' କ'ଣ ? ହଠାତ୍ ତା' ବେକଟା ଚାପି ହେଇ ଯାଉଛି । ଦେଖିଲା ବେଳକୁ ସେ ଫାସରେ ପଡ଼ି ସାରିଲାଣି । ଛାଟି ପିଟି ହେବାରୁ ବେକଟା ଆହୁରି ବେଶି ଚାପି ହେଇଗଲା । କ'ଣ କରିବ ? ତାକୁ ଆଉ କିଛି ବୁଦ୍ଧି ଦିଶିଲା ନାହିଁ ।

ସେ ମନେ ମନେ ଭାବିଲା- ମୁଁ ଆଜି ଓଟକୁ ମାଡ଼ ଖୋଇବାକୁ ବ୍ୟବସ୍ଥା କରିଥିଲି । ଭଗବାନ ମୋତେ ତା'ର ଫଳ ଦେଇଦେଲେ ।

ଏଣିକି ତେଣିକି ଚାହିଁ ବିଲୁଆ ଦେଖିଲା, ଆଖୁଚାଷୀ ଦୁଇଜଣ ମୋଟା ମୋଟା ଠେଙ୍ଗା ଧରି ତା' ଆଡ଼କୁ ମାଡ଼ି ଆସୁଛନ୍ତି । ପାହାର ଭୟରେ ତା' ଦେହ ଥରି ଉଠିଲା ।





# ମାଙ୍କଡ଼ କୁମ୍ଭୀର କଥା

**ଆମେ ପଢ଼ିଥିଲୁ-**

ଥରେ ମାଙ୍କଡ଼ର କଲିଜା ଖାଇବାକୁ କୁମ୍ଭୀର ତାକୁ ପିଠିରେ ବସେଇ ନେଉଥିଲା । ମାଙ୍କଡ଼ ଉପସ୍ଥିତ ବୁଦ୍ଧି ଖଟେଇ କହିଲା- 'ମୁଁ ତ କଲିଜାଟାକୁ ଗଛ କୋରଡ଼ରେ ରଖି ଦେଇ ଆସିଛି । ନଈ କୂଳକୁ ଚାଲ, ମୁଁ ତାକୁ ଆଣି ତମକୁ ଦେଇଦେବି' ।

ବିଶ୍ୱାସ ଘାତକ ବନ୍ଧୁକୁ ସେ ମିଛ କଥା କହି ନିଜ ଜୀବନ ରକ୍ଷା ପାଇ ପାରିଥିଲା ।

**ତା'ପରେ କ'ଣ ହେଲା ଜାଣିଛ ?**

ଗଛ ଉପରକୁ ଉଠିଯାଇ ମାଙ୍କଡ଼ ଆଉ ତଳକୁ ଫେରିଲା ନାହିଁ । କୁମ୍ଭୀର ତା' ମନରେ ବିଶ୍ୱାସ ଜନ୍ମେଇବା ପାଇଁ ବିଭିନ୍ନ ପ୍ରକାର ଉପାୟ ଖଞ୍ଜିଲା । କଅଁଳ କଥା କହିଲା । ଗେଲ ଥଟ୍ଟାରେ ସେମିତି କହି ଦେଇଥିଲା ବୋଲି ବୁଝେଇଲା ।

ଚତୁର ମାଙ୍କଡ଼ ତା'ର କଥାକୁ ମୋଟେ ଶୁଣିଲା ନାହିଁ । ଶେଷରେ ସେ ତାକୁ ବିଶ୍ୱାସ ଘାତକ କହି ଗାଳିଦେଲା । ଆଉ ଏ'ଗଛ ମୂଳକୁ କେବେ ଆସିବୁ ନାହିଁ ବୋଲି କହିଲା ।

ନିରାଶ ମନରେ କୁମ୍ଭୀର ତା'ଘରକୁ ଫେରି ତା'ସ୍ତ୍ରୀ କୁମ୍ଭୀରାଣୀକୁ ସବୁକଥା କହିଲା । କୁମ୍ଭୀରାଣୀ ତାକୁ ବୁଦ୍ଧି ବତେଇ ଦେଇ କହିଲା-'ତମେ ଆଉ କିଛିଦିନ ମାଙ୍କଡ଼ ସହିତ କଥାବାର୍ତ୍ତା କରନାହିଁ । ସେହି ଜାମୁଗଛ ମୂଳେ ମଲାପରି ପଡ଼ିରୁହ । ଆଖିରୁ ଲୁହ ଝରେଇ ମିଛରେ ମିଛରେ

କାନ୍ଦ । ଦେଖିବ ଦିନେ ନା ଦିନେ ମାଙ୍କଡ଼ ଆସି ତମର କାନ୍ଦିବାର କାରଣ ପଚାରିବ । ତମେ କହିଦେବ, ତମକୁ ଝୁରି ଝୁରି ମୋ ସ୍ତ୍ରୀ କୁମ୍ଭୀରାଣୀ ମରିଗଲା । ତମକୁ ମିଛ କଥାଟା କହି ଥିବାରୁ ମୋତେ ପାପ ଲାଗିଥିଲା । ସେଇଥି ପାଇଁ ମୁଁ ଅନ୍ନ-ଜଳ ଛାଡ଼ି ଦେଇଛି । ତମେ ମୋତେ କ୍ଷମା ନକଲେ, ମୁଁ ଏଇଠି ଏଇମିତି ପଡ଼ି ପଡ଼ି ମରିଯିବି ପଛେ, ଆଉ କୁଆଡ଼େ ଯିବିନାହିଁ । ତା'ପରେ ମାଙ୍କଡ଼ର ଗତି ବିଧିକୁ ଦେଖି ବ୍ୟବସ୍ଥା କରିବ' ।

କୁମ୍ଭୀରାଣୀ କଥାଟା କୁମ୍ଭୀର ମନକୁ ପାଇଲା । ସେ ସଙ୍ଗେ ସଙ୍ଗେ ନଈ କୂଳକୁ ଯାଇ ଜାମୁଗଛ ମୂଳେ ମଲାପରି ପଡ଼ି ରହିଲା ।

ଜାମୁକୋଳି ଖାଇ ଗଛ ଉପରେ ମାଙ୍କଡ଼ ମଜାରେ ଥାଏ । ସବୁଦିନ କୁମ୍ଭୀରକୁ ଦେଖେ, ସେ ମଲାପରି ପଡ଼ି ରହିଥାଏ । ଆଖିରୁ ତା'ର ଲୁହ ଝରୁ ଥିବାର ଦେଖାଯାଏ ।

ଅନେକ ଦିନ ପର୍ଯ୍ୟନ୍ତ କୁମ୍ଭୀର ଅଖିଆ ଅପିଆ ପଡ଼ି ରହିଲା । ତାକୁ ଦେଖି ମାଙ୍କଡ଼ ମନରେ ଦୟା ଆସିଲା । ସେ ଭାବିଲା-ଯାହାହେଉ ପଛେ କୁମ୍ଭୀରଟା ତ ମୋର ପୁରୁଣା ବନ୍ଧୁ । ସେ କ'ଣ ଗୋଟାଏ ଭୁଲ କରି ଦେଇଥିଲା । ସେଥିପାଇଁ ସେ ଅନେକ ଅନୁତାପ କରି ସାରିଲାଣି । ମୋ ଉପରେ ଅଭିମାନ କରି ସେ ଅଖିଆ ଅପିଆ ପଡ଼ି ରହିଛି । ଏମିତି ପଡ଼ି ପଡ଼ି ଯଦି ସେ ମରିଯାଏ, ତେବେ ମୋତେ କୁମ୍ଭୀର ମରା ଦୋଷ ନିଶ୍ଚୟ ଲାଗିବ । ଘଟଣା କ'ଣ ଟିକେ ବୁଝି ଦେବା ଉଚିତ ହେବ ।

ମାଙ୍କଡ଼ ଗଛର ତଳ ଡାଳକୁ ଓହ୍ଲାଇ ଆସି କୁମ୍ଭୀରକୁ ପଚାରିଲା,-'ବନ୍ଧୁ ! ଏମିତି କାନ୍ଦୁଛ କାହିଁକି ? ତମର ଦୁଃଖ ଦେଖି ମୋତେ ବି ଦୁଃଖ ଲାଗୁଛି । ଯାଅ ଖାଇ ପିଇ ଖୁସିରେ ରୁହ' ।

କୁମ୍ଭୀର ମଥା ଟେକି କହିଲା-'ବନ୍ଧୁ ମାଙ୍କଡ଼ ! ମୁଁ ତୁମକୁ ମିଛ କହି ଯେଉଁ ପାପ କରିଛି, ତା'ର ପ୍ରାୟଶ୍ଚିତ ପାଇଁ ମୁଁ ଏ' ଦଣ୍ଡ ପାଉଛି । ତୁମ ସହିତ ମୁଁ ବିଶ୍ୱାସ ଘାତକତା କରୁଥିଲି । ମୋତେ ତମେ କ୍ଷମା ନଦେବା ଯାଏ, ମୁଁ ଏଇଠି ଏଇମିତି ପଡ଼ି ରହିଥିବି' ।

କୁମ୍ଭୀରର ଛଳନାପୂର୍ଣ୍ଣ କଥାକୁ ମାଙ୍କଡ଼ ବୁଝି ପାରିଲା ନାହିଁ । ସେ କୁମ୍ଭୀର ପାଖକୁ ଆସି ତା' ଲୁହକୁ ପୋଛି ଦେଇ କହିଲା-' ମୁଁ ତୁମକୁ କ୍ଷମା କରି ଦେଇ ସାରିଛି । ଏଣିକି ମୁଁ ଆଗପରି ପୁଣି ଜାମୁକୋଳି ଖାଇବାକୁ ଦେବି । ଆମର ବନ୍ଧୁତା ସବୁଦିନ ରହିଥାଉ' ।

ମାଙ୍କଡ଼ର କଥା ସରିଛି କି ନାହିଁ, ହଠାତ୍ କୁମ୍ଭୀର ତା'କଣ୍ଟା ଲାଞ୍ଜରେ ମାଙ୍କଡ଼ର ପିଠିକୁ କଷିକି ଦେଲା ପାହାରେ । ମାଙ୍କଡ଼ ଆସି ପଡ଼ିଲା, ନଈ ମଝିରେ । କୁମ୍ଭୀର ଡେଇଁ ପଡ଼ି ତାକୁ ପାଣିରେ ମାଡ଼ି ବସିଲା । ମାଙ୍କଡ଼ ନିରୁପାୟ ହୋଇ ଭାବୁଥିଲା, ଅବିଶ୍ୱାସୀ ବନ୍ଧୁକୁ ଆଉଥରେ ବିଶ୍ୱାସ କରିବା ଉଚିତ୍ ନୁହେଁ । କିନ୍ତୁ ମୁଁ ତ ଭୁଲ କରି ସାରିଛି । ମୋତେ ମରିବାକୁ ହିଁ ପଡ଼ିବ ।






# ସୁନା କଙ୍କଣ ଓ ଲୋଭୀ ବ୍ରାହ୍ମଣ

**ଆମେ ପଢ଼ିଥିଲୁ-**

ମଣିଷ ଖିଆ ବାଘଟିଏ ବୁଢା ହେଇ ଯାଇଥାଏ । ସେ ଗୋଟାଏ ସୁନା କଙ୍କଣକୁ ଧରି ବାଟରେ ଯାଉଥିବା ବାଟୋଇମାନଙ୍କୁ ଦାନ୍ ଦେବାକୁ ମିଛରେ କହୁଥାଏ । ଥରେ ଜଣେ ଲୋଭୀ ବ୍ରାହ୍ମଣ ସେହି କଙ୍କଣ ନେବାକୁ ବାଘ ପାଖକୁ ଗଲା । ବୁଢ଼ା ବାଘ ତାକୁ ପାଖରେ ପାଇ ମାଡ଼ି ବସିଲା ।

**ତା'ପରେ କ'ଣ ହେଲା ଜାଣିଛ ?**

ଲୋଭୀ ବ୍ରାହ୍ମଣକୁ ବାଘ ଖାଇ ଯିବା କଥାଟା ଚାରିଆଡ଼େ ପ୍ରଚାର ହେଇଗଲା । ଲୋକେ ଆଉ କେହି ବୁଢ଼ା ବାଘ କଥାକୁ ବିଶ୍ୱାସ କଲେନାହିଁ । ବାଘଟା ସେଇମିତି କଙ୍କଣକୁ ଧରି ବାଟୋଇମାନଙ୍କୁ ନିଜ ପାଖକୁ ଆସିବାକୁ ଡାକୁଥାଏ । କିଛିଦିନ ପରେ ଥରେ ବାଘ ଦେଖିଲା , ଲୋଭୀ ବ୍ରାହ୍ମଣର ପୁଅ

ତା'ପାଖକୁ ଆସୁଛି । ତା'ପାଟିରୁ ଲାଳ ବୋହିଲା । ସେ ପାଟି କରି କହିଲା-'ଆସ ଆସ ବ୍ରାହ୍ମଣ ପୁଅ! ମୋ ହାତରୁ ଏ' କଙ୍କଣଟାକୁ ନେଇଯାଅ । ଏଇ କଙ୍କଣଟିକୁ ଦାନ ଦେଇ ମୁଁ କିଛି ଧର୍ମ ଅର୍ଜନ କରିବି' ।

ବ୍ରାହ୍ମଣ ପୁଅ କହିଲା-' ବାଘମାମୁ ! ଆଜି ମୋ ବାପାଙ୍କର ଶ୍ରାଦ୍ଧ ଦିଆଯାଉଛି । ସେ ମରିବା ପୂର୍ବରୁ ମୋତେ କହିଥିଲେ,-' ମୋ ଶ୍ରାଦ୍ଧଦିନ ବାଘମାମୁଙ୍କୁ ଗୋଟାଏ ବଡ଼ ଲଡୁ ଖାଇବାକୁ ଦେବୁ । ସେ ଲଡୁକୁ ଖାଇ ସାରିଲେ, ତାଙ୍କ ଠାରୁ ସୁନା କଙ୍କଣ ଆଣି ପିନ୍ଧିବୁ । ସେଇଥି ପାଇଁ ମୁଁ ଘର ତିଆରି ଲଡୁ ଧରି ଆସିଛି । ହେଇ ଦେଖ ମୁଁ ଏଇଠି ପୁଡ଼ିଆ ରଖିଲି । ତମେ ଖିଆ ପିଆ ସାରୁଥାଅ । ମୁଁ ମାଇଁ ପାଖରୁ ଟିକେ ବୁଲି ଆସୁଛି' ।

ବ୍ରାହ୍ମଣ ପୁଅ କଥା ଶୁଣି ବୁଢ଼ାବାଘ ଖୁସି ହେଇଗଲା । ସେ ମନେ ମନେ ଭାବିଲା-ଅନେକ ଦିନ ହେଲା, ମୋ ପାଟିରେ ମିଠା ବାଜି ନଥିଲା । ଯାହା ହେଉ ଆଜି ମିଠା ଲଡୁ ଖାଇବାକୁ ମିଳିଗଲା । ପାକୁଆ ପାଟିରେ ଲଡୁଟା ମିଳେଇ ଯିବ । ଲଡୁ ଖାଇ ଟିକେ ବିଶ୍ରାମ ନେବି । କିଛି ସମୟ ପରେ ହଜମି ହେଇ ଯାଇଥିବ । ପେଟ ବି ଖାଲି ହେଇ ଯାଇଥିବ । ତା'ପରେ ବ୍ରାହ୍ମଣ ଟୋକାଟା ଆସିଲେ, ମଣିଷ ମାଂସ ଖାଇବି ।

ବ୍ରାହ୍ମଣ ପୁଅ ଲଡୁ ରଖି ଦେଇ ସେଠାରୁ ଚାଲିଗଲା । ବାଘ ଧୀରେ ଧୀରେ ଯାଇ ଲଡୁକୁ ଧରି ଏକାଥରେ ପାଟିରେ ପୂରାଇ କାମୁଡ଼ି ଦେଲା ।  ହଟାତ୍ ଲଡୁ ଭିତରେ ଥିବା ବାଣଟା ଡୋ- କରି ଫୁଟିଲା । ବୁଡାବାଘର ମୁଣ୍ଡଟା ଫାଟି ଛିନଛତର ହେଇଗଲା । ବାଣ ଫୁଟିବା ଶବ୍ଦ ଶୁଣି ପାରି ବ୍ରାହ୍ମଣ ପୁଅ ଅଧାବାଟରୁ ଫେରି ଆସି ବାଘ ପାଖରେ ପଡ଼ିଥିବା କଙ୍କଣକୁ ନେଇ ଘରକୁ ଫେରିଲା ।






# ବିରାଡ଼ି ବୈଷ୍ଣବ କଥା

**ଆମେ ପଢ଼ିଥିଲୁ-**

ଗୋଟିଏ ଗଛରେ ଚଡେଇମାନେ ବସା କରି ରହି ଥାଆନ୍ତି । ଗୋଟାଏ ବୁଢ଼ା-ଅନ୍ଧ ଶାଗୁଣା ତାଙ୍କର ଛୁଆମାନଙ୍କୁ ଜଗେ । ଥରେ ବିରାଡ଼ିଟିଏ ଆସି ବୁଢ଼ା ଶାଗୁଣା ସହିତ ଗପ-ସପ କଲା । ବିଶ୍ୱାସ ଜମେଇ ସବୁତକ ଚଢ଼େଇ ଛୁଆଙ୍କୁ ମାରି ଖାଇ ଦେଲା । ଚଢ଼େଇମାନେ ବସାକୁ ଫେରି ଭାବିଲେ, ବୁଢ଼ା ଶାଗୁଣା ତାଙ୍କ ଛୁଆମାନଙ୍କୁ ଖାଇ ଦେଇଛି । ତେଣୁ ସେମାନେ ମିଶି ଅନ୍ଧ ଶାଗୁଣାକୁ କାମୁଡ଼ି କାମୁଡ଼ି ମାରିଦେଲେ ।

**ତା'ପରେ କ'ଣ ହେଲା ?**

ଶାଗୁଣା ମରିଗଲା ପରେ ସମସ୍ତେ ଜାଣିଲେ, ଛୋଟା ଭୂଆ ବିଲେଇ କପଟ କରି ମିଛ ଧାର୍ମିକ ସାଜି ତାଙ୍କର ଛୁଆମାନଙ୍କୁ ମାରି ଖାଇ ଯାଇଥିଲା । ତେଣୁ ସବୁ ଚଡେଇ ମିଶି ଅନୁତାପ କଲେ । ଏଣିକି ସେମାନେ ବୁଝି ବିଚାରି କାମ କରିବେ ବୋଲି ଶପଥ ନେଲେ ।

କିଛିଦିନ ପରେ ଚଢ଼େଇମାନଙ୍କର ପୁଣି ଛୁଆ ହେଲେ । ସେମାନେ ଆଉଜଣେ ଜଗୁଆଳି ଖୋଜିଲେ । ସମସ୍ତେ କହିଲେ, ଚିଲଟିଏ ବୁଢ଼ାହେଇ ଯିବାରୁ ସେ ଆଉ ଆକାଶରେ ଉଡ଼ି ଶିକାର କରି ପାରୁନାହିଁ । ତାକୁ ଆମେ ଜଗୁଆଳି କରି ଦେଲେ, ଛୁଆମାନେ ନିରାପଦରେ ରହି ପାରିବେ । ବୁଢ଼ା ଚିଲ ସମସ୍ତଙ୍କ କଥାରେ ରାଜି ହେଇଗଲା । ଠକ ଭୂଆ କେତେବେଳେ କେଉଁ ବାଟେ ଆସି କାଳେ ଛୁଆମାନଙ୍କୁ ଖାଇଯିବ, ସେଥିପାଇଁ ଚିଲ ସବୁବେଳେ ଜାଗ୍ରତ ହୋଇ ରହିଥାଏ ।

ଦିନେ ଭୂଆ ବିଲେଇ ମୁଣ୍ଡରେ ଚିତା ଚଇତନ ଲଗାଇ, ବେକରେ ତୁଳସୀ ମାଳ ଝୁଲେଇ ରାମ ରାମ କହି ଚିଲ କୋରଡ଼ରେ ପହଞ୍ଚିଲା । ତାକୁ ଦେଖି ଚିଲ ସାବଧାନ ହେଇଗଲା ।

ଆଗତୁରା ବିଲେଇ କହିଲା-' ଚିଲଭାଇ ! ନମସ୍କାର । ମୁଁ ଶୁଣିବାକୁ ପାଇଲି, ତମେ ଗୋଟାଏ ନୂଆ ଚାକିରି ପାଇଛ । ଖୁସି ଲାଗିଲା ଯେ, କିନ୍ତୁ ମନରେ ଟିକେ ଖଟା ରହିଗଲା । କଥା କ'ଣ କି ତମେ ହେଲ, ପକ୍ଷୀ ଜାତିର ଗର୍ବ । ସାହସୀ ପକ୍ଷୀ ଭାବରେ ତମର ସୁନାମ ରହିଛି । ସିଂହ ମରିଯାଏ ପଛେ ଘାସ ଖାଏନାହିଁ । ଏକଥା ତମେ ନିଶ୍ଚୟ ଶୁଣିଥିବ । ତମର ଅଜା ଦିନେ ପକ୍ଷୀ ରାଜ୍ୟର ରାଜା ଥିଲେ । ତମେ ରଜାର ନାତି ହେଇ ଆଜି ସାମାନ୍ୟ ଜଗୁଆଳୀ ଚାକିରି କରୁଛ । ଏଇଥି ପାଇଁ ମୋତେ ଟିକେ ଖରାପ ଲାଗିଲା । ଏସବୁ ଛୋଟ ମୋଟ କାମ ପାଇଁ ତ ଆମେ ଅଛୁ । ମୁଁ ଜୀବନରେ ଅନେକ ମୂଷା ମାରି ପାପ ଅର୍ଜନ କରିଛି ।

ସେଇଥି ପାଇଁ ଭାବିଛି, ଶେଷ ଜୀବନରେ ଚଢ଼େଇମାନଙ୍କର ସେବା କରି କିଛି ଧର୍ମ କରିବି । ସେବାଦ୍ୱାରା ମୋତେ ମୁକ୍ତି ମିଳିଯିବ । ମୋତେ ଟିକେ ସେବା କରିବାର ସୁଯୋଗ ଦିଅ । ମୁଁ ଏହି ଛୁଆମାନଙ୍କୁ ଜଗା ରଖା କରିବି । ତମେ ଯାଇ ପଦାରେ ବୁଲାବୁଲି କର' ।

ଭୂଆ ବିଲେଇର କଥା ଶୁଣି ଚିଲ ତା'ର ଅସଲ ଉଦ୍ଦେଶ୍ୟକୁ ବୁଝିନେଲା । ମନେ ମନେ ଭାବିଲା- କପଟି ବିଲେଇକୁ କପଟ ଆଚରଣ ଦ୍ୱାରା ହିଁ ଶିକ୍ଷା ଦେବାକୁ ହେବ । ତେଣୁ ସେ କହିଲା- 'ଭୂଆ ଭାଇ! ତମେ ହେଉଛ, ପକ୍ଷୀ କୁଳର ମଙ୍ଗଳକାରୀ ଜୀବ ବିଲେଇ । ତମେ ହିଁ ଏହି ଚଢ଼େଇ ଛୁଆମାନଙ୍କୁ ରକ୍ଷା କରି ପାରିବ । ତମେ ଭଲ ଗଛ ଚଢ଼ିପାର । କିନ୍ତୁ ଗଛର ଅଗକୁ ଯାଇ ପାରୁଛ କି

ନାହିଁ, ସେକଥା ମୁଁ ଜାଣେନାହିଁ । ଗଛ ଅଗରେ ବସି ଶତ୍ରୁମାନଙ୍କୁ ନିରୀକ୍ଷଣ କରିବାକୁ ହେବ । ସେ କାମ ତମେ ପାରିବ ତ'?

ତରବର ହେଇ ଭୂଆ ବିଲେଇ କହିଲା-' ଏଇ ଗୋଟାଏ କଥା ! ତମେ ଆକାଶକୁ ଉଡ଼ି ଯାଇ ଉପରୁ ଦେଖ । ମୁଁ କେମିତି ଗଛ ଅଗକୁ ଚଢ଼ି ପାରୁଛି' ।

ଭୂଆ ବିଲେଇ ଚାହୁଁ ଚାହୁଁ ଗଛର ସବୁଠୁ ଉଚ୍ଚ ଡାଳକୁ ଚଢ଼ିଗଲା । ଚିଲ ତା'ର ଡେଣା ମେଲାଇ ଆକାଶକୁ ଉଠିଗଲା । ଠିକ୍ ସୁଯୋଗ ଦେଖି ଚିଲ ନିଜର ଟାଣୁଆ ପନ୍ଝାରେ ବିଲେଇକୁ ଶୂନ୍ୟରେ ଟେକି ନେଇଗଲା । ବିଲେଇ କିଛି ବୁଝି ପାରିଲା ନାହିଁ । ସେ ପଚାରିଲା-' ଚିଲ ଭାଇ! ମୋତେ ତମେ କୁଆଡ଼େ ନେଇକି ଯାଉଛ ? ମୋତେ ଡର ଲାଗୁଛି । କେତେବେଳେ ତଳକୁ ଖସି ପଡ଼ିବି । ମୋର ଆଉ ଗୋଟାଏ ଗୋଡ଼ ଭାଙ୍ଗିଯିବ' ।

ଚିଲ କହିଲା-' ନାଇଁ ଭାଇ, ତମକୁ ଏମିତି ଜାଗାରେ ଛାଡ଼ିବି ଯେ, ତମର ଗୋଡ଼ ମୋଟେ ଭାଙ୍ଗିବ ନାହିଁ । ସେ ଜାଗାଟି ହେଉଛି, ଖରସ୍ରୋତା ନଈ । ଜୀବନ କାଳ ଭିତରେ ତମେ ଚଢ଼େଇମାନଙ୍କର ଅନେକ ସେବା କରି ସାରିଲଣି । ଏଣିକି ନଈ ଭିତରେ ଥିବା ମାଛମାନଙ୍କର କିଛିଦିନ ସେବା କରି ପାରିବ' ।

ଚିଲର ଟାଣୁଆ ନଖ ଗୁଡ଼ାକ ସେତେବେଳକୁ ତା' ଦେହରେ ଫୁଟି ଯାଇଥାଏ । ତା'ଶକ୍ତ ପଞ୍ଝାରୁ ଖସିଯିବାର କିଛି ଉପାୟ ନପାଇ ବିଲେଇଟା କେବଳ ଛଟପଟ ହେଉଥାଏ । କିଛି ସମୟ ପରେ ସେ ଦେଖିଲା, ତଳେ ଖରସ୍ରୋତା ନଈର ଅକାତ କାତ ପାଣି । ତାକୁ ଦେଖି ତା' ଦେହ ଥରି ଉଠିଲା ।

ଚାହୁଁ ଚାହୁଁ ଚିଲ ତା' ପଞ୍ଝାକୁ ହୁଗୁଳା କରିଦେଲା । ଠକ ବିଲେଇ ନଈ ମଝିରେ ଖସି ପଡ଼ିଲା ।





# ଗଧିଆ ଓ ବଗ କଥା

**ଆମେ ପଢ଼ିଥିଲୁ-**

ଥରେ ଗୋଟିଏ ଗଧିଆ ତଣ୍ଟିରେ ହାଡ଼ ଖଣ୍ଡେ ଲାଗି ଯାଇଥିଲା । ଯେତେ ଚେଷ୍ଟା କଲେ ବି ସେ ତାହାକୁ ବାହାର କରି ପାରିଲା ନାହିଁ । ବାଟରେ ବଗ ଦେଖା ହେଲା । ସେ ତାକୁ ଅନୁରୋଧ କଲା । ହାଡ଼ଟା ବାହାର କରି ଦେଲେ, ସେ ତାକୁ ପୁରସ୍କାର ଦେବାକୁ କହିଲା । ବଗ ତା'ର ଲମ୍ବା ଥଣ୍ଟକୁ ଗଧିଆ ପାଟିରେ ପୂରାଇ ହାଡ଼କୁ ବାହାର କରିଦେଲା । ବଗ ପୁରସ୍କାର ମାଗିଲା ବେଳକୁ ଗଧିଆ କହିଲା-'ତୁ ଗୋଟାଏ ବଗ ହେଇ ମୋ ଭଳି ଭୟଙ୍କର ଜୀବ ପାଟିରେ ଥଣ୍ଟ ପୂରାଇ ପାରିଲୁ । ମୁଁ ତୋତେ ନଖାଇ ଛାଡ଼ିଦେଲି । ସେଇଟା କ'ଣ ତୋ ପାଇଁ ପୁରସ୍କାର ନୁହଁ? ଭାଗ୍ୟ ଭଲ ଥିଲେ, ଶୀଘ୍ର ଏଠୁ ପଳା । ନହେଲେ ତତେ ମୁଁ ଆଗ ଖାଇବି' ।

ଜୀବନ ବିକଳେ ବଗ ସେଠାରୁ ଚାଲିଗଲା ।

**ତା'ପରେ କ'ଣ ହେଲା?**

ଡରୁଆ ବଗ ଅବିଶ୍ୱାସୀ ଗଧିଆ ଭୟରେ ସେଠାରୁ ଚାଲିଗଲା ।

ଗଧିଆ ତାକୁ ଠକି ଦେଇ ପାରି ଥିବାରୁ ଖୁସିରେ ଯାଇ ନିଜର ସାଙ୍ଗମାନଙ୍କୁ ଏ'କଥା କହିଲା । ଜଣେ ସାଙ୍ଗ ତାକୁ କହିଲା-'ତମେ ଯାହା କଲ, ତାହା କିଛି ଭଲ ହେଲାନାହିଁ । ବିପଦ

ବେଳେ ଯିଏ ଆମକୁ ସାହାଯ୍ୟ କରେ , ସିଏ ହିଁ ପ୍ରକୃତ ବନ୍ଧୁ । ପୁରସ୍କାର ନଦେଲେ ବି ତାକୁ ଧନ୍ୟବାଦ କହିବା ଉଚିତ ଥିଲା । ଭୁଲ କରି କ୍ଷମା ମାଗିବାରେ କିଛି କ୍ଷତି ହୁଏନାହିଁ । ଚାଲ ଆମେ ସମସ୍ତେ ମିଶି ବଗ ପାଖକୁ ଯାଇ କୃତଜ୍ଞତା ଜଣାଇ ଆସିବା' ।

ସାଙ୍ଗର କଥା ଗଧିଆ ମନକୁ ପାଇଲା ନାହିଁ । ସେ କହିଲା-' ତମେ ମୋର ସାଙ୍ଗ ହେଇ ଏମିତି କଥା କେମିତି କହୁଛ ? ବଗ ହେଉଛି, ଆମର ଖାଦ୍ୟ । ଆମେ ହେଲୁ ଖାଦକ । ଆମମାନଙ୍କର ସେବା କରିବା ହେଉଛି- ସେମାନଙ୍କର ଧର୍ମ । ଆମେ ତାଙ୍କ ପାଖରେ କ୍ଷମା ମାଗିଲେ, ସେମାନେ ଆଉ ଆମକୁ ଭୟ କରିବେ ନାହିଁ । ବଗ ତା'ର କାମ କରିଛି । ଆମେ ଆମର କାମ କରିଛୁ' ।

ଆକାଶରେ ଉଡ଼ି ଗଲାବେଳେ ବଗ ସବୁଦିନ ଗଧିଆକୁ ଦେଖେ । ଦିନେ ଦେଖିଲା, ସେହି ଗଧିଆ ରଡ଼ି ଛାଡ଼ି ତଳେ ଗଡୁଛି । ବିକଳ ହେଇ ସେ ବଗକୁ କହିଲା-'ବଗ ଭାଇ! ପୁଣିଥରେ କଣ୍ଟାଏ ଗଳାରେ ଲାଗିଯାଇଛି । ବହୁତ କଷ୍ଟ ପାଉଛି । ଗତଥର ପୁରସ୍କାର ମୁଁ ତମକୁ ଦେଇ ପାରି ନଥିଲି । ତମେ ମୋ ଗଳାରୁ ଏଥର କଣ୍ଟାଟାକୁ ବାହାର କରିଦିଅ । ଦୁଇଟା ଯାକ ପୁରସ୍କାର ଏକାଥରେ ନେଇଯିବ' ।

ଉପରୁ ଥାଇ ବଗ କହିଲା-' ଆମ ଭଳି ଛୋଟିଆ ଜୀବ ତମଭଳି ଭୟଙ୍କର ଜୀବର ପାଟିରେ ଥଣ୍ଟ ପୂରେଇବା ଠିକ୍ ହେବନାହିଁ । ତମେ ଯାଇ ଦନ୍ତା ହାତୀର ସହାଯ୍ୟ ନିଅ । ସେ ତା'ର ଲମ୍ବା ଦାନ୍ତରେ ତମ ଗଳାସଫା କରିଦେଇ ପାରିବ' । ବଗର କଥାଟା ତାକୁ କଟା ଘାଆରେ ଚୂନ ଦେଲା ପରି ଲାଗିଲା ।

ବଗ ସେଠାରୁ ଚାଲି ଯିବା ପରେ ସେ ଅସହାୟ ଅବସ୍ଥାରେ ସେଇଠି ପଡ଼ି ରହିଲା । ଅନ୍ୟ ଗଧିଆମାନେ ତା'ର କଷ୍ଟ ସହି ନପାରି ଦନ୍ତାହାତୀକୁ ଖୋଜିଲେ । ଦନ୍ତାହାତୀ ତା'ର ଶୁଣ୍ଢ ହଲେଇ ହଲେଇ ଆସି ପହଞ୍ଚିଲା । ଗଧିଆକୁ ଆଁ କରିବାକୁ କହିଲା । ତା'ର ଲମ୍ବା ଦାନ୍ତକୁ ଗଧିଆ ପାଟିରେ ଭର୍ତ୍ତି କରି ତାଡ଼ିଦେଲା । ଗଁ-ଗଁ ଶବ୍ଦ କରି ଗଧିଆଟା ସେଇଠି ଓଲଟି ପଡ଼ିଲା ।

ଦେଖିଲା ବେଳକୁ ହାତୀର ଲମ୍ବା ଦାନ୍ତଟା ଗଧିଆ ତଣ୍ଟିକୁ ଫୁଟେଇ ପଦାକୁ ବାହାରି ଆସିଛି । ମୁଣ୍ଡା ମୁଣ୍ଡା ରକ୍ତ ବୋହି ଚାଲିଛି । ଅନ୍ୟ ଗଧିଆମାନେ ରକ୍ତକୁ ଦେଖି ଭୟରେ ଥରିବାକୁ ଲାଗିଲେ । ହାତୀ କହିଲା, ଗଧିଆଟା ତଳେ ପଡ଼ିଯିବାରୁ ତା' ତଣ୍ଟି ଫୁଟିଗଲା । ଏଥିଲେ ମୋର କିଛି ଦୋଷ ନାହିଁ । ଛୁଞ୍ଚିରେ ଫୁଟେଇବା ଜିନିଷକୁ ଯଦି ଶାବଳରେ ତଡ଼ାଯାଏ, ତା'ର ଫଳ ଏଇୟା ହୁଏ । ତମେ ଯଦି ବଗକୁ ଅନୁରୋଧ କରି ଏ' କାମଟା କରେଇ ପାରିଥା'ନ୍ତ, ତେବେ ଗଧିଆ ମରି ନଥା'ନ୍ତା' ।

ଗଧିଆର ସାଙ୍ଗ ବୁଝେଇ ଦେଲା-' ବଗ ଆଗେ ଥରେ ଗଧିଆ ତଣ୍ଟିରୁ ହାଡ଼ ବାହାର କରିଥିଲା । କିନ୍ତୁ ତା' ସହିତ ଏ' ଗଧିଆ ବିଶ୍ୱାସ ଘାତକତା କଲା । ତେଣୁ ସେ ଏଥର ଆଉ ପାଖକୁ ଆସିଲା ନାହିଁ । ସେ ଠକାମିର ଫଳ ପାଇବ ନାହିଁ ତ ଆଉ କିଏ ପାଇବ'?



# ଝିଣ୍ଟିକା ଓ ପିମ୍ପୁଡି

**ଆମେ ପଢ଼ିଥିଲୁ-**

ଥରେ ଝିଣ୍ଟିକାଟିଏ ଡେଇଁ ଡେଇଁ ଖେଳୁ ଥିଲା । ସେ ପିମ୍ପୁଡିକୁ ସାଙ୍ଗ ହେଇ ଖେଳିବାକୁ ଡାକିଲା । ପିମ୍ପୁଡ଼ି ତାକୁ କହିଲା - 'ବର୍ଷାଦିନ ଆସୁଛି । ମୋତେ ଖାଦ୍ୟ ସଂଗ୍ରହ କରିବାକୁ ହେବ । ଖେଳିବାକୁ ସମୟ ନାହିଁ' ।

ଝିଣ୍ଟିକା ତାକୁ ଏଣୁ ତେଣୁ କହି ଗାଳିଦେଇ ନିଜେ ମଜାରେ ଖେଳିଲା । ବର୍ଷାଦିନ ଆସିବାରୁ ପିମ୍ପୁଡ଼ି ସଞ୍ଚୟ କରି ରଖିଥିବା ଖାଦ୍ୟକୁ ଖାଇ ମଜାରେ ରହିଲା । ଏଣେ ଝିଣ୍ଟିକା ଭୋକ ଉପାସରେ ରହିଲା । ଶେଷରେ ପିମ୍ପୁଡ଼ି ପାଖରେ ହାତ ପାତି ଖାଇବାକୁ ମାଗିଲା । ଖେଳିବୁଲି ସମୟ ନଷ୍ଟ କରି ଥିବାରୁ ଝିଣ୍ଟିକା ହଇରାଣ ହେଲା ।

**ତା'ପରେ କ'ଣ ହେଲା ?**

ଝିଣ୍ଟିକା ଭୋକ ଉପାସରେ ଥିବା କଥା ଜାଣି ପିମ୍ପୁଡ଼ି ତାକୁ କିଛି ଖାଦ୍ୟ ଦେଲା । ତାକୁ ଖାଇ ଝିଣ୍ଟିକା କିଛିଦିନ ଚଳିଗଲା । କିନ୍ତୁ ସେ ଭିକ ମାଗି ଖାଇ ଥିବାରୁ ତାକୁ ବଡ଼ ଅପମାନ ଲାଗିଲା । ସେ

ଭାବିଲା , ପିମ୍ପୁଡ଼ିଟା ଗାତରେ ରହିବା ଜୀବ । ସେ ତା' ଗାତରେ ଖାଦ୍ୟକୁ ସଞ୍ଚୟ କରି ରଖେ । ମୁଁ ତ ଲୁଚି ଛପି ଘାସ ବଦା ମୂଳେ ରହେ । ଖାଦ୍ୟକୁ ସଞ୍ଚୟ କରି ରଖିବି କେଉଁଠି ? ପିମ୍ପୁଡ଼ି ଆତ୍ମରକ୍ଷା ପାଇଁ ଅନ୍ୟକୁ କାମୁଡ଼ି ପକାଏ । ମୁଁ ତ କାହାରିକୁ କେବେ କାମୁଡ଼ି ପାରେନାହିଁ । ପିମ୍ପୁଡ଼ି ପରି ଖାଦ୍ୟ ସଂଗ୍ରହ କରିବା ମୋ ପକ୍ଷେ ସମ୍ଭବ ନୁହେଁ । ସମସ୍ତେ ଯଦି କେବଳ ଖାଦ୍ୟ ସଂଗ୍ରହରେ ଲାଗି ରହିବେ, ତେବେ ନାଚ ,ଗୀତ ଆଉ ଖେଳ କ'ଣ ବନ୍ଦ ହେଇଯିବ? ଏଥିପାଇଁ ବରଂ ମୋତେ ଖାଦ୍ୟ ଅଭ୍ୟାସ ବଦଳାଇ ଦେବାକୁ ପଡ଼ିବ । ମୁଁ ଆଉ ତମର ପ୍ରତିଦ୍ୱିନ୍ଦୀ ହେବିନାହିଁ । କଅଁଳ ଘାସ ଓ ପତ୍ର ଖାଇବି । ଭୋକ ବେଳେ ଖାଇବାକୁ ଖୋଜିବାକୁ ପଡ଼ିବ ନାହିଁ । ଖେଳିବା ବେଳେ ଖେଳ ବି ହେବ । ସଞ୍ଜ ବେଳେ ନାଚ ଗୀତର ଆସର ଜମିବ ।

ସେ ଆଉ ବେଶୀ ସମୟ ଅପେକ୍ଷା ନକରି ଗଛର ପତ୍ର ଖାଇବା ଅଭ୍ୟାସ ଆରମ୍ଭ କରିଦେଲା । ଧୀରେ ଧୀରେ ଗଛର କଅଁଳ ପତ୍ର ତାକୁ ଖାଇବାକୁ ଭଲ ଲାଗିଲା । ବର୍ଷାଦିନରେ ପ୍ରଚୁର ପରିମାଣରେ କଅଁଳ ପତ୍ର ମିଳିବାରୁ ସେ ତାକୁ ମଜାରେ ଖାଇଲା । ସଞ୍ଜ ବେଳକୁ ମଧୁର ସ୍ୱରରେ ଗୀତ ବୋଲିଲା । ଦିନରାତି ଡେଇଁ ଡେଇଁ ନାଚି ଖେଳି ମଉଜ କଲା ।

ଦିନେ ସେ ପିମ୍ପୁଡ଼ିକୁ ଦେଖି କହିଲା-'ପିମ୍ପୁଡ଼ି ନାନୀ ! ତମେ ମୋତେ ସେଦିନ ଖାଇବାକୁ ଦେଇ ନୂଆ ବାଟ ଦେଖେଇ ଦେଇଛ । ଏବେ ମୁଁ ନିଜର ଖାଦ୍ୟ ଅଭ୍ୟାସ ବଦଳେଇ ଦେଇଛି । ଆଉ ମୋତେ ଖାଦ୍ୟ ସଂଗ୍ରହ କରିବାକୁ ପଡ଼ିବ ନାହିଁ । ମୁଁ ନାଚ-ଗୀତ କରି ତମର ମନୋରଞ୍ଜନ କରିବି । ଅବସର ସମୟରେ ତମେ ବି ମୋ ସାଙ୍ଗରେ ଟିକେ ଖେଳା ବୁଲା କରି ପାରିବ' । ଝିଣ୍ଟିକାର କଥା ପିମ୍ପୁଡ଼ି ମନକୁ ପାଇଲା ।

ଦୁହେଁ ଦୁହିଁଙ୍କ ହାତକୁ ଧରି ଆନନ୍ଦରେ ନାଚି ଉଠିଲେ ।





# ବାଘ ଓ ଫାଗ କଥା

ଆମେ ପଢ଼ିଥିଲୁ-

ଥରେ ଗୋଟିଏ ଛେଳି ବଣରେ ଚରୁ ଚରୁ ରାତି ହେଇ ଯାଇଥିଲା । ସେ ଗୋଟାଏ ଗୁମ୍ଫା ଭିତରେ ପଶି ଯାଇ ଲୁଚିକରି ରହିଲା । ସେହି ଗୁମ୍ଫାରେ ବାଘଟିଏ ରହେ । ବାଘ ରାତିରେ ଗୁମ୍ଫାକୁ ଫେରି ଦେଖେ ତ କେହି ଜଣେ ଭିତରେ ପଶି ରହିଛି । ଛେଳି ଜାଣିଲା, ମୁଁ ତ ନିଶ୍ଚୟ ବାଘ ପାଟିରେ ପଡ଼ିବି । କିନ୍ତୁ ତା' ପୂର୍ବରୁ ନିଜ ବୁଦ୍ଧି ଖଟେଇ ବଞ୍ଚିବାକୁ ଟିକେ ଚେଷ୍ଟା କରେ ।

ସେ ଗୁମ୍ଫା ଭିତରେ ଥାଇ ନିଜର ଲୋମ ଆଉ ନିଶକୁ ଫୁଲେଇ ରଖିଲା । ଦୁଇ ଗୋଡ଼କୁ ଟେକି ଖୁବ୍ ଜୋରରେ ଗୋଟାଏ ରଡ଼ି ଛାଡ଼ି କହିଲା-'ମୁଁ ହେଉଛି ଫାଗ, ମୁଁ ଖାଏ ବାଘ' ।

ଏଭଳି ଜୀବର ନାମ ଆଗରୁ ବାଘ ତ କେବେ ଶୁଣି ନଥିଲା । ତେଣୁ ସେ ଭୟରେ ଗୁମ୍ଫା ଭିତରକୁ ନପଶି ଜଙ୍ଗଲ ଭିତରକୁ ପଳାଇ ଗଲା । ଛେଳି ସେଇଠି ଆରାମରେ ରହି ସକାଳେ ଘରକୁ ଫେରିଲା ।

## ତା'ପରେ କ'ଣ ହେଲା ?

ଏ'ସମସ୍ତ ଘଟଣାକୁ ବିଲୁଆ ଲୁଚି ଲୁଚି ଦେଖିଥିଲା । ଭୟଙ୍କର ବାଘକୁ ସାମାନ୍ୟ ଛେଳିଟା ଡରେଇ ଦେଲା । ଏ'କାମ ଦେଖି ତାକୁ ଭାରି ହସ ମାଡ଼ିଲା । ମନେ ମନେ ବହେ ହସିଲା । ବାଘର ଏମିତିକା ଡରୁଆ ରୂପ ସେ ଆଗରୁ କେବେ ଦେଖି ନଥିଲା । ସେ ବାଘ ପଛେ ପଛେ କିଛି ବାଟ ଯାଇ ଦେଖିଲା, ବିଚରା ବାଘଟା ଭୟରେ ଏକମୁହାଁ ହେଇ ଅନ୍ୟ ଗୋଟାଏ ବଣ ଆଡ଼କୁ ଦଉଡୁଛି । ଏହି ଘଟଣାର ସୁଯୋଗ ନେଇ ବିଲୁଆ ବଣ ସାରା ବୁଲି ବୁଲି କହିଲା-'ଆମ ବଣକୁ ଗୋଟାଏ ଅତି ଭୟଙ୍କର ଜୀବ ଫାଗ ପଶି ଆସିଛି । ସେ କେବଳ ବାଘ ଖାଏ । ବଣୁଆ ଜୀବମାନେ ତା' କଥାକୁ ଶୁଣି ପ୍ରଥମେ ବିଶ୍ୱାସ କରି ପାରିଲେ ନାହିଁ ।

ସଞ୍ଜବେଳକୁ ବାଘର ଗୁମ୍ଫା ଆଗରେ ଗଧିଆ , ହେଟା ଓ ଭାଲୁ ବସି ବିଚାର କଲେ । ବଣର ରାଜା ହେଇ ଯଦି ବାଘ ଏମିତି ଭୟ କରେ, ତେବେ ବଣର ଅନ୍ୟ ଜୀବମାନେ ବଞ୍ଚି ରହିବେ କେମିତି ? ରାଜ୍ୟରେ ତ ଅରାଜକତା ଦେଖାଦେବ । ଏକଥାର ସତ୍ୟତା ଖୋଜି ବାହାର କରାଯାଉ । ବାଘ ନିଜ ମୁହଁରେ ସତକଥା ସମସ୍ତଙ୍କ ଆଗରେ ପ୍ରଘଟ କରନ୍ତୁ ।

ଏମିତି ଆଲୋଚନା ଚାଲିଥିବା ବେଳେ ବିଲୁଆ ଆସି ଖବର ଦେଲା- ଆମ ବାଘ ରାଜା ଫାଗ ଭୟରେ ବଣ ଛାଡ଼ି ପଳାଇଛନ୍ତି । ସେ ଗଲାବେଳେ ମୋତେ କହି ଯାଇଛନ୍ତି- "ଫାଗ ଆମ ବଣରେ ଥିବା ପର୍ଯ୍ୟନ୍ତ ସେ ଅନ୍ୟ ବଣରେ ଲୁଚି ରହିବେ" ।

ତାଙ୍କ ତରଫରୁ ମୋତେ ବଣ ରାଜ୍ୟ ଚଳାଇବାକୁ ସେ ଆଦେଶ ଦେଇଛନ୍ତି । ଆଜିଠାରୁ ତମେମାନେ ମୋର ପ୍ରଜା ହେଇ ରହିଲ । ମୁଁ ଯାହା କହିବି, ତମେମାନେ ତାକୁ ଅକ୍ଷରେ ଅକ୍ଷରେ ପାଳନ କରିବ । ଫାଗ ଭୟରେ ତମେମାନେ କେହି ପଦାକୁ ବାହାରିବ ନାହିଁ । ବିଲୁଆର କଥାକୁ ସମସ୍ତେ ବିଶ୍ୱାସ କରି କିଏ ଗାତରେ ତ କିଏ ବୁଦାମୂଳେ ଲୁଚି ରହିଲେ । ବିଲୁଆ ବାଘର ଗୁମ୍ଫାକୁ ଲାଗି ରହିଥିବା ଉଚ୍ଚ ଜାଗାକୁ ନିଜର ସିଂହାସନ କଲା । ବିଲୁଆ ନୂଆ ରାଜା ହେବା କଥା ଶୁଣି ଅନ୍ୟ ପଶୁମାନେ ଆସି ତାକୁ ଜୁହାର ହେଲେ । ତା'ର ଜୟଗାନ କଲେ ।

କିଛିଦିନ ପରେ ସବୁକଥା ବାଘ କାନରେ ପଡ଼ିଲା । ସେ ଗୋଟାଏ ସାହସୀ ଛେଳିର ରଡ଼ି ଶୁଣି ଡରି ଯାଇଥିବା କଥା ବି ଜାଣି ପାରିଲା । ଏଥିପାଇଁ ତାକୁ ଭାରି ଲାଜ ଲାଗିଲା । ଧୀର ମନରେ ପୁଣି ସେ ଚିନ୍ତା କଲା, ସତରେ ସାମାନ୍ୟ ଛେଳିଟା ସାହସ କରି ବଣର ରାଜାକୁ ଡରେଇ ଦେଇପାରିଛି ।

ଏହା କମ୍ ଗୌରବର କଥା ନୁହେଁ। ସମସ୍ତେ ଛେଳିକୁ ଡରୁଆ ଜୀବ ହିସାବରେ ଗଣନା କରି ଥାଆନ୍ତି। କିନ୍ତୁ ଛେଳି ତା'ର ଉପସ୍ଥିତ ବୁଦ୍ଧି ବଳରେ ନିଜକୁ ଗୋଟାଏ ସାହସୀ ପଶୁ ଭାବରେ ପରିଚିତ କରାଇ ପାରିଛି ' ତେଣୁ ମୁଁ ଏଥିପାଇଁ ଛେଳିକୁ ନିଜର ମନ୍ତ୍ରୀ କରି ରଖିବି।

ଏଣେ ବିଲୁଆର ଠକାମୀ କଥା ଶୁଣି ବାଘ ଭୟଙ୍କର ରୂପ ଧାରଣ କଲା। ଚାହୁଁ ଚାହୁଁ ସେ ଆସି ନିଜ ଗୁମ୍ଫା ପାଖରେ ପହଞ୍ଚିଗଲା। ସେଇଠି ବିଲୁଆ ବସି ରାଜ୍ୟ ଶାସନ କରୁଥାଏ। ବାଘକୁ ସାମନାରେ ଦେଖି ତା'ର ଅବସ୍ଥା ଖରାପ।

ବାଘ ତା'ର ନିଶକୁ ଫୁଲେଇ ବିଲୁଆ ଉପରକୁ କୁଦି ପଡିଲା। ଅନ୍ୟ ଜୀବଜନ୍ତୁମାନେ ଜୀବନ ବିକଳେ ଯିଏ ଯୁଆଡେ ଧାଇଁଲେ। ବାଘର ପାଦ ତଳେ ପଡ଼ି ବିଲୁଆ ନିଜର ଭୁଲ ପାଇଁ କ୍ଷମା ପ୍ରାର୍ଥନା କଲା। ବାଘ ତାକୁ ନମାରି କହିଲା- 'ଆଜି ତୋତେ ମୁଁ କ୍ଷମା କରି ଦେଉଛି। ସାହସୀ ଛେଳିକୁ ଯାଇ ତୁ ସାଦରେ ନିମନ୍ତ୍ରଣ କରି ଆଣିବୁ ଯା'। ସେ ଆଜିଠାରୁ ମୋର ମନ୍ତ୍ରୀ ହୋଇ ରହିବ। ତା' ମୁଣ୍ଡରେ ପାଟ ପାଗ ବନ୍ଧା ଯିବ।

ତୁ ଗୋଟାଏ ଠକ ଆଉ ବଦମାସ। ଆଜିଠାରୁ ତୁ ମୋ ଆଗକୁ କେବେ ଆସିବୁ ନାହିଁ। ଯଦି ଆସୁ, ତେବେ ସେହିଦିନ ତୋତେ ମୁଁ ଆଗ ଖାଇବି'।

ବାଘର କଥା ଶୁଣି ବିଲୁଆ ମୁଣ୍ଡ ତଳକୁ କରି ଛେଳିକୁ ନିମନ୍ତ୍ରଣ କରିବାକୁ ଚାଲିଗଲା। ଛେଳି ଆସି ମନ୍ତ୍ରୀ ହେଲା, କିନ୍ତୁ ବିଲୁଆ ଆଉ ଫେରିଲା ନାହିଁ। ବଣରେ ଲୁଚି ରହିଲା।

ସେହି ଦିନଠାରୁ ବିଲୁଆ ଆଉ କେବେ ବାଘ ଆଗକୁ ଆସିବାକୁ ସାହସ କରେନାହିଁ। ଲୁଚି ଲୁଚି ରହେ। ବାଘର ବଳକା ଅଇଁଠା କଣ୍ଟା ଖାଇ ବଞ୍ଚେ।







# ସିଂହ ଓ ମୂଷା

**ଆମେ ପଢ଼ିଥିଲୁ-**

ଥରେ ଗୋଟିଏ ସିଂହ ନିଦରେ ଶୋଇଥିଲା । ଛୋଟିଆ ମୂଷାଟିଏ ବୁଲୁ ବୁଲୁ ଜାଣି ନପାରି ସିଂହର ନାକ ପୁଡ଼ାରେ ପଶିଗଲା । ସିଂହ ତାକୁ ମାରି ଦେବାକୁ ଧରି ପକାଇଲା । ବିଚରା ମୂଷା ବିକଳ ହେଇ କହିଲା-'ମୋତେ କ୍ଷମା କରି ଦିଅନ୍ତୁ । ମୁଁ ବଞ୍ଚି ରହିଥିଲେ , ଦିନେ ନା ଦିନେ ଆପଣଙ୍କର ଉପକାର ସୁଝିଦେବି । ସେଦିନ ସିଂହ ଦୟାକରି ମୂଷାକୁ ଛାଡ଼ି ଦେଇଥିଲା ।

ଆଉ ଦିନେ ସିଂହ ଜାଲରେ ପଡ଼ି ଯାଇଥିଲା । ମୂଷା ତାକୁ ଦେଖି ଚିହ୍ନିଲା । ତା'ର ତୀକ୍ଷଣ ଦାନ୍ତରେ ଜାଲକୁ କାଟି ଦେଲା । ସିଂହ ମୂଷାର କରାମତି ଦେଖି କହିଲା-'ତୁ ଛୋଟିଆ ଜୀବ ହେଲେ ବି ମୋ ଜୀବନ ରକ୍ଷା କରିଦେଲୁ' ।

ମୂଷା ତା'ର ପରିଚୟ ଦେଇ କହିଲା-' ମୁଁ ହେଉଛି , ସେହି ମୂଷା ଯାହାକୁ ଆପଣ ସେଦିନ ଦୟାକରି ଛାଡ଼ି ଦେଇଥିଲେ । ଆଜି ଉପକାର ସୁଝି ପାରି ଥିବାରୁ ମୋତେ ଭାରି ଖୁସି ଲାଗୁଛି' ।

**ତା'ପରେ କ'ଣ ହେଲା ?**

ସିଂହ ଜାଲରୁ ମୁକୁଳି ଗୁମ୍ଫାକୁ ଫେରିଯାଇ ତା' ଛୁଆମାନଙ୍କୁ ସବୁକଥା କହିଲା । ଛୁଆମାନେ କହିଲେ-'ତମେ ଜଙ୍ଗଲର ରାଜା ହେଇ ଜାଲଟାକୁ ଛିଡ଼େଇ ପାରିଲ ନାହିଁ ? ସାମାନ୍ୟ ମୂଷାଟା

ସେ ଜାଲକୁ ଛିଡ଼େଇଲା କେମିତି ? ଆମକୁ ଏକଥା ମୋଟେ ବିଶ୍ୱାସ ହେଉନାହିଁ । ଚାଲ ଆମକୁ ସେ ଜାଲ ଦେଖେଇବ । ସେ ମୂଷାକୁ ବି ଦେଖାଇବ । ତେବେ ଯାଇ ଆମେ ତମ କଥାକୁ ବିଶ୍ୱାସ କରିବୁଁ ।

ସିଂହର କଥାକୁ ତା' ଛୁଆମାନେ ବିଶ୍ୱାସ କରୁ ନଥିବାରୁ ତାକୁ ବହୁତ ଖରାପ ଲାଗିଲା । ସେ କହିଲା-'ବାପା- ମାଆ କି ଗୁରୁଜନ ଯାହା କହନ୍ତି, ତାକୁ ବିଶ୍ୱାସ କରିନେବା ଉଚିତ । ସେମାନଙ୍କର ଅନୁଭବ ଓ ଅଭିଜ୍ଞତା ପିଲାମାନଙ୍କୁ ଠିକ୍ ବାଟ ଦେଖାଇ ଦିଏ । ଏମିତି କେତେଟା କାମ ଅଛି, ଆମେ ତାକୁ କରି ପାରିବା ନାହିଁ, କିନ୍ତୁ ଅତି ଛୋଟ ଜୀବ ତାକୁ ସହଜରେ କରି ଦେଇପାରେ । ଏ' କଥାକୁ ମନେ ରଖିବାକୁ ହେବ । ଯାହାଦ୍ୱାରା ଯେଉଁ କାମ ହୋଇପାରେ , ତା'ଦ୍ୱାରା ସେ କାମ କରେଇ ନେବା ଭଲ' ।

ସବୁ କଥା ଶୁଣି ସାରି ଛୁଆମାନେ ପୁଣି ଜିଦ୍ କରି କହିଲେ-' ନିଜ ଆଖିରେ ଜାଲକୁ ନଦେଖିଲେ, ଆମେ ତୁମ କଥାକୁ ବିଶ୍ୱାସ କରି ପାରିବୁ ନାହିଁ ' ।

ନିଜେ ଜାଲକୁ ଛିଡ଼େଇ ସେମାନେ ଠିକ୍ କଲେ, ବାପାଙ୍କୁ ଦେଖାଇ ଦେବେ । ତେଣୁ ସଞ୍ଜବେଳକୁ ସିଂହଛୁଆମାନେ ଜାଲ ଦେଖିବାକୁ ବାହାରି ପଡ଼ିଲେ । ପୂର୍ବରୁ ସିଂହଟା ଜାଲରୁ ଖସି ଯାଇ ଥିବାରୁ ଶିକାରିମାନେ ସେଦିନ ଦୁଇଟା ନୂଆ ଜାଲ ବିଛେଇ ଦେଇଥିଲେ । ସିଂହ ଛୁଆମାନେ ସେହି ଜାଲରେ ଛନ୍ଦି ହେଇ ପଡ଼ିଲେ । ସେମାନେ ତ ଆଗରୁ କେବେ ଜାଲ ଦେଖି ନଥିଲେ । ଜାଲରୁ କେମିତି ମୁକୁଳିବେ, ସେକଥା ବି ଜାଣି ନଥିଲେ । ଜାଲରେ ପଡ଼ି ସେମାନେ ଛଟପଟ ହେଲେ । ରଡ଼ି ଛାଡ଼ିଲେ ।

ସିଂହ ଛୁଆମାନଙ୍କର ରଡ଼ି ଶୁଣି ମୂଷା ଆସି ସେଇଠି ପହଞ୍ଚି ଗଲା । ସେ ଜାଲକୁ କାଟି ତାଙ୍କୁ ମୁକୁଳେଇ ଦେବାକୁ କହିଲା । ଛୁଆମାନେ ତାକୁ କହିଲେ, 'ଆମେ ହେଉଛୁ, ଜଙ୍ଗଲର ରାଜା ସିଂହର ଛୁଆ । ତୋ' ପରି ଛୋଟ ଜୀବଠାରୁ ଆମେ ସାହାଯ୍ୟ ନେବୁ ନାହିଁ । ଆମେ ନିଜେ ନିଜକୁ ରକ୍ଷା କରିବୁ । ତୁ ତୋ କାମରେ ଯା' ।

ସିଂହର ଛୁଆମାନଙ୍କୁ ସାହାଯ୍ୟ କରି ନପାରି ମୂଷା ମନ ଦୁଃଖରେ ସେଠାରୁ ଚାଲିଗଲା ।

ନିଜର ଯାହା ବଳ ଥିଲା, ସବୁ ବଳ ଖଟେଇ ସିଂହଛୁଆମାନେ ଥକି ପଡ଼ିଲେ । ତଥାପି ସେମାନେ ଜାଲକୁ ମୋଟେ ଛିଡ଼େଇ ପାରିଲେ ନାହିଁ । ରଡ଼ି ଛାଡ଼ି ଛାଡ଼ି ତାଙ୍କର ତଣ୍ଟି ପଡ଼ିଗଲା । ଶେଷରେ ସେମାନେ ମୂଷାକୁ ମନେ ପକାଇଲେ । କିନ୍ତୁ ସେତେବେଳକୁ ରାତି ପାହି ଆସୁଥିଲା । ଶିକାରିମାନେ ଜନ୍ତା ଧରି ସେଇଠି ଆସି ପହଞ୍ଚିଲେ । ସିଂହର ଛୁଆମାନଙ୍କୁ ସେମାନେ ଲୁହା କଡ଼ିରେ ବାନ୍ଧି ପକାଇଲେ । ଜନ୍ତାରେ ପୂରାଇ ସହରକୁ ନେଇଗଲେ । ସେମାନେ ଜନ୍ତା ଭିତରେ ଥାଇ କଥା ହେଉଥିଲେ,-' ଆମେ ବାପାଙ୍କ କଥା ନମାନି ମନରେ ଅହଂକାର ରଖି ଥିବାରୁ ଆଜି ଆମକୁ ଏ'ଦଶା ଭୋଗିବାକୁ ପଡ଼ିଲା ।



# ସାପ ଓ ନେଉଳ କଥା

## ଆମେ ପଢ଼ିଥିଲୁ-

ଜଣେ ଗରିବ ସ୍ତ୍ରୀଲୋକ ନେଉଳଟିଏ ପାଳିଥିଲା । ଦିନେ ସେ ତା'ର ଛୋଟ ପୁଅକୁ ଘରେ ଛାଡ଼ିଦେଇ ପାଣି ଆଣିବାକୁ ପୋଖରୀକୁ ଯାଇଥିଲା । । ଘରେ ନେଉଳଟି ପୁଅ ପାଖରେ ଥାଏ । ପୋଖରୀ ତୁଠରେ ଥାଇ ସ୍ତ୍ରୀ ଲୋକଟି ଦେଖିଲା , ନେଉଳ ଆସି ତାକୁ ଘରକୁ ଫେରି ଆସିବାକୁ ଇସାରା ଦେଉଛି । ତା'ପାଟିରେ ରକ୍ତ ଲାଗିଛି । ରକ୍ତକୁ ଦେଖି ସେ ଡ଼ରିଗଲା । ମନକୁ ମନ ଠିକ୍ କରି ନେଇଗଲା , ନେଉଳ ନିଶ୍ଚୟ ପୁଅକୁ କାମୁଡ଼ି ମାରି ଦେଇଛି । ସେ ଆଗ ପଛ ବିଚାର ନକରି ରାଗରେ ନେଉଳ ଉପରେ ପାଣି କଳସୀକୁ କଚାଡ଼ି ଦେଇ ଘରକୁ ଚାଲିଗଲା । ସେ ଭାବିଲା - 'ନେଉଳଟା ମରିଗଲା' ।

ସ୍ତ୍ରୀଲୋକଟି ଘରକୁ ଯାଇ ଦେଖିଲା , ପୁଅଟି ଶୋଇ ମଜାରେ ଖେଳୁଛି । ବିଷଧର ସାପଟା ଖଣ୍ଡ ଖଣ୍ଡ ହେଇ ତା'ପାଖରେ ପଡ଼ିଛି । ସେ ଜାଣି ପାରିଲା , ବିଷଧର ସାପଟିକୁ ନେଉଳ ମାରି ପୁଅକୁ ରକ୍ଷା କରିଛି । ସେ ନିଜର ଭୁଲ ପାଇଁ ବହୁତ ଅନୁତାପ କଲା । ନବୁଝି ନଦେଖି ହଠାତ ଏଭଳି କାମ କରି ଥିବାରୁ ସେ ନିଜକୁ କ୍ଷମା କରି ପାରିଲା ନାହିଁ ।

## ତା'ପରେ କ'ଣ ହେଲା ?

ପୁଅର ଜୀବନକୁ ରକ୍ଷା କରିଥିବା ନେଉଳଟି ମରି ଯାଇ ଥିବା କଥା ଭାବି ସ୍ତ୍ରୀଲୋକଟି ଦୁଃଖରେ ଭାଙ୍ଗି ପଡ଼ିଲା । ସେ ନେଉଳକୁ ମାରି ଜୀବନରେ ଗୋଟାଏ ବଡ଼ ପାପ କରିଛି ବୋଲି ଭାବିଲା । ପାପର ପ୍ରାୟଶ୍ଚିତ ପାଇଁ କ'ଣ କରିବାକୁ ହେବ, ଏ'କଥା ସେ ବିଭିନ୍ନ ଲୋକଙ୍କୁ ପଚାରିଲା ।

ସେହି ଗାଆଁରେ ଜଣେ ବାରିକ ରହେ । ସେ କହିଲା-' ନେଉଳ ମରା ପାପ ପାଇଁ ବ୍ୟସ୍ତ ହେବାର କିଛିନାହିଁ । ତମ ବଂଶରେ ଯେତେଜଣ ଅଛ, ସମସ୍ତେ ଦଶାହ ଦିନ ଲଣ୍ଡା ହେବ । ମୁଁ ମଲା ତୁଠରେ ସବୁ କାମ କରିଦେବି, ମୋ ପାଇଁ ନୂଆ ଧୋତି, ଗାମୁଛା କିଣି ଆଣିଥିବ । ମଲା କାମ ପାଇଁ ଟିକେ ଅଧିକ ପାଉଣା ପଡ଼ିବ । ତମେ ଟଙ୍କା ଯୋଗାଡ଼ କର । ଆଉ କିଛି କରିବା ଦରକାର ନାହିଁ । ମୁଁ ସବୁକାମ କରିଦେବି"।

ବାରିକ ସେଠାରୁ ଚାଲିଯିବା ପରେ ବିଚାରି ସ୍ତ୍ରୀଲୋକଟି କେମିତି ଲଣ୍ଡା ହେବ ? ଏତେ ଟଙ୍କା କେଉଁଠୁ ପାଇବ ? ଏକଥା ଭାବୁଥାଏ । ଏତିକି ବେଳେ ସେହିବାଟ ଦେଇ ତାଙ୍କ ଗାଆଁ ଧୋବା ଯାଉଥିଲା । ସେ ନିଜ ଆଡୁ କହିଲା,-' ମାଉସୀ ! ମୁଁ ଶୁଣିଲି, ତମେ କ'ଣ ସେ ପୋଷା ନେଉଳଟାକୁ ମାରି ଦେଇଛ । ତମ ପରିବାରର ସମସ୍ତେ ମାରା ହେଇ ଯାଇଛ । ନେଉଳ ମରା ପାପ ଭଳି ଆଉ ବଡ଼ ପାପ ନାହିଁ । ତମର ସବୁ ଲୁଗା ପଟାକୁ ଦଶଦିନ ଭିତରେ ତିନିଥର ଧୋଇବାକୁ ପଡ଼ିବ । ପାପ ଛଡ଼େଇବା ପାଇଁ ଦଶଦିନ ଯାକ ଆମ ପରିବାର ତମ ଘରେ ଖାଇବେ । ମୋ ପାଇଁ ଖଣ୍ଡେ ଭଲ ଦାମିକା ଧୋତି ଆଉ ଧୋବଣୀ ପାଇଁ ଭଲ ଶାଢ଼ୀ ଖଣ୍ଡେ କିଣି ଆଣିଥିବ । ଆଜିକାଲିର ଦରଦାମ ଦେଖିକି ଆମକୁ ମଜୁରୀ ଦବ । ମୁଁ ତମ ପାଖେ ପାଖେ ଥିବି । କପଡ଼ା ପଟା ଧୋଇଦେଲେ, ତମର ସବୁ ପାପ ଆପେ ଆପେ ଧୋଇ ହେଇଯିବ' ।

ଧୋବାର କଥା ଶୁଣି ସ୍ତ୍ରୀଲୋକଟିର ହଲକ ଶୁଖିଗଲା । ମନେ ମନେ ହିସାବ କଲା, ନିଜ ଘରକୁ ବନ୍ଧା ପକେଇଲେ, ମହାଜନ ଅତି ବେଶିରେ ଶହେଟା ଟଙ୍କା ଦେବେକି ନାହିଁ ସନ୍ଦେହ । ବାରିକ ତ ଦୁଇଶହ ଟଙ୍କାର ହିସାବ ଦେଇ ଯାଇଛି । ଏଣେ ଧୋବା ପାଇଁ ଦୁଇଶହ ଟଙ୍କା ଲାଗିବ । କ'ଣ କରିବ, ପାପକୁ କେମିତି ଛଡ଼େଇବ, ସେହି ଚିନ୍ତାରେ ତା'ମନ ବିକଳ ହେଉଥାଏ । କିଛି ସମୟ ପରେ ତାଙ୍କ ଗାଆଁର ଜ୍ୟୋତିଷ ଆସି ଦାଣ୍ଡରେ ଡାକ ପକେଇଲେ ।

ସେ ଖଡ଼ି ପକେଇ ଗଣନା କରି ବୁଝେଇ ଦେଲେ, 'ନେଉଳଟା ତମ ଘରପାଇଁ ଲକ୍ଷ୍ମୀ ପ୍ରତିମାଟିଏ ଥିଲା । ସେ ଶନିବାର ଦିନ ମରିଛି, ତେଣୁ ତାକୁ ପୁଷ୍କର ଦୋଷ ଲାଗିଛି । ତମ ମାଆ ପୁଅଙ୍କର ବି ଶନି ମହାଦଶା ପଡ଼ିଲା ଭଳି ଲାଗୁଛି । ମୁଁ ତମର ଏ' ଦୁଃଖ କଥା ଶୁଣି ଆଉ ସ୍ଥିର ହେଇ

ରହି ପାରିଲି ନାହିଁ । ଭାବିଲି ଯାଏ, ମାଆ ପୁଅଙ୍କର ଜାତକଟା ଟିକେ ଭଲ କରି ଦେଖି ଦେଇ ଆସେ ।

ଶୁଣ ମା ! ତମେ ଚାଉଳ, ମୁଗଡାଲି, ଆଳୁ, ପନି ପରିବା ସଞ୍ଜା ଯୋଗାଡ଼ କର । ମୋତେ ଖଣ୍ଡେ ଆସନ ଦିଅ । ମୁଁ ଖଡ଼ି ପକେଇ ନେଉଳର ଗ୍ରହରାଶି ଟିକେ ଦେଖିଦିଏ । ବ୍ୟସ୍ତ ହେବାର କିଛି ନାହିଁ । ନାହାକ ପୁଅ ନେଇ ନେଇ ଶହେଟା ଟଙ୍କା ପାଉଣ ନେବ । କିନ୍ତୁ ତମେ ଜାଣିବ ଯେ, ନେଉଳର ଆତ୍ମାଟା ସିଧା ସ୍ୱର୍ଗକୁ ଗଲା' ।

ଠିକ୍ ସେତିକି ବେଳେ ତାଙ୍କ କୁଳ ପୁରୋହିତ ଆସି ସେଇଠି ପହଞ୍ଚିଗଲେ । ସେ ନେଉଳ ଶ୍ରାଦ୍ଧ ପାଇଁ ଯାହା ଯାହା ଦରକାର, ତା'ର ତାଲିକା ତିଆରି କରି ଆଣିଥିଲେ । ସେ କହିଲେ,-'ନେଉଳ ମରା ପାପରୁ ମୁକ୍ତି ପାଇବାକୁ ହେଲେ, ଅତି କମ୍‌ରେ ଗୋଟାଏ ବ୍ରାହ୍ମଣ ଭୋଜନ ଦେବାକୁ ପଡ଼ିବ । ଖିରି, ପୁରି, ତରକାରୀ ଓ ମିଠାର ବ୍ୟବସ୍ଥା କରିବାକୁ ହେବ । କାରଣ ଆଜିକାଲି ଆଉ ସେ ପୁରୁଣା କାଳିଆ ବ୍ରାହ୍ମଣ ନାହାନ୍ତି ଯେ, ଚୂଡ଼ା, ଗୁଡ଼, ଦହି ଆଉ ଖଟାରେ କାମ ଚଳେଇ ଦେବେ । ବିଭିନ୍ନ ଗାଆଁରୁ ବ୍ରାହ୍ମଣମାନେ ଆସି ପହଞ୍ଚିବେ । ଏଇଟା ଏଣୁ ତେଣୁ ପାପ ନୁହେଁ । ପୋଷା ନେଉଳ ମରା ମହାପାପ । ଶହେ ମୂର୍ତ୍ତି ଦାନୁଆ ବ୍ରାହ୍ମଣ ପେଟ ଭରି ନଖାଇଲେ, ଏ'ପାପ ମୋଟେ ଛାଡ଼ିକି ଯିବ ନାହିଁ । ଜୀବନସାରା ଦୁଃଖ କଷ୍ଟ ପାଇବ । ମନ ଊଣା କରନା ମା ! ତମେ କ'ଣ ସବୁଦିନ ଖାଇବାକୁ ଦଉଛ ? ଥରେ ଦବ ତ ଭଲ କରି ଦେଇଦିଅ । ତମ ପୁଅକୁ ସମସ୍ତେ କଲ୍ୟାଣ କରିକି ଯିବେ' । ତାଙ୍କରି କଲ୍ୟାଣରୁ ତ ପୁଅଟା ଆଜି ବଞ୍ଚିଗଲା ।

ସ୍ତ୍ରୀଲୋକଟି ପୁରୋହିତଙ୍କ କଥାକୁ ମନ ଦେଇ ଶୁଣି ସାରି ପଚାରିଲେ-' ନନା ! ଏଥିପାଇଁ କେତେ ଖର୍ଚ୍ଚ ଲାଗିବ' ?

ନନା ମନେ ମନେ ହିସାବ କରି କହିଲେ,-' ଶହେ ମୂର୍ତ୍ତି ବ୍ରାହ୍ମଣଙ୍କ ପାଇଁ ହଜାରଟି ଟଙ୍କା ଲାଗିବ' ।

ନନାଙ୍କ କଥା ଶୁଣି ସାରିଲା ବେଳକୁ ସ୍ତ୍ରୀଲୋକଟି ଥରି ଥରି ତଳେ ପଡ଼ିଗଲା । ଜ୍ୟୋତିଷ ଓ ପୁରୋହିତ ତାକୁ ଉଠେଇ ଦେଖିଲେ, ତା'ର ଆଉ ଚେତା ନାହିଁ । ସେମାନେ ପାଣି ଛାଟି ତା'ର ଚେତା ଫେରେଇ ଆଣିଲେ ।

ଏତିକିବେଳେ ସମସ୍ତେ ଦେଖିଲେ, ନେଉଳଟାଏ ଆସି ପୁଅ ପାଖରେ ବସିଛି । ସ୍ତ୍ରୀଲୋକଟି ଦଉଡ଼ି ଯାଇ ସେ ନେଉଳକୁ କୋଳେଇ ପକାଇଲା । ଅନ୍ୟମାନେ କିଏ କେତେବେଳେ କୁଆଡ଼େ ଗଲେ, ସ୍ତ୍ରୀଲୋକଟି ଜାଣି ପାରିଲା ନାହିଁ । ସେ ଭାବିଲା- ନେଉଳଟା ସତରେ ମରିଥିଲା କି ନାହିଁ, ମୁଁ ଆଉ ଥରେ ଦେଖି ଦେଇଥିଲେ, ଏତେ ହିନସ୍ତା ହେଇ ନଥା'ନ୍ତି ।





# ବୋକା ଚାକର କଥା

**ଆମେ ପଢ଼ିଥିଲୁ-**

ଜଣେ ରାଜା ଥିଲେ । ସେ କାହାକୁ କେବେ ବିଶ୍ୱାସ କରନ୍ତି ନାହିଁ । ତାଙ୍କର ଧାରଣା ଥିଲା - ଶିକ୍ଷିତ ଓ ଚତୁର ଲୋକମାନଙ୍କୁ ବ୍ୟକ୍ତିଗତ କାମରେ ଲଗେଇଲେ, ସେମାନେ ସୁବିଧା ସୁଯୋଗ ଦେଖି ତାଙ୍କୁ ବିପଦରେ ପକାଇ ଦେଇ ପାରନ୍ତି । ତେଣୁ ସେ ନିଜର ସେବାକାରୀ ହିସାବରେ କେବଳ ବୋକାମାନଙ୍କୁ ନିଯୁକ୍ତି ଦେଇଥିଲେ । ଜଣେ ବିଶ୍ୱସ୍ତ ବୋକା ଚାକର ରାଜାଙ୍କ ଶୟନ କକ୍ଷ ଭିତରେ ରହେ । ସେ ରାଜାଙ୍କ ସୁଖ ନିଦ୍ରାରେ ସାହାଯ୍ୟ କରେ । ଥରେ ଗୋଟାଏ ମଶା ରାଜାଙ୍କୁ କାମୁଡ଼ିବାକୁ ଏପଟ ସେପଟ ହେଲା । ବିଶ୍ୱସ୍ତ ଚାକରଟି ସାବଧାନ ହେଇଗଲା । ସେ ତ ନିହାତି ବୋକା ଚାକର ଥିଲା । ତୁରନ୍ତ ସେ ଖଣ୍ଡାଟିଏ ଆଣି ମଶାକୁ ମାରିବାକୁ ଜଗି ବସିଲା । ମଶା ଉଡ଼ି ଉଡ଼ି ଶେଷରେ ରାଜାଙ୍କ ମୁହଁରେ ବସି ପଡ଼ିଲା । ଚାକରଟି ଖୁବ୍ ସାବଧାନ ହେଇ ଧାରୁଆ ଖଣ୍ଡାରେ ମଶାକୁ ଚୋଟେ ମାରିଦେଲା । ମଶା ତ ଉଡ଼ିଗଲା , କିନ୍ତୁ ରାଜାଙ୍କ ମୁଣ୍ଡ ଗଣ୍ଡି ଅଲଗା ହେଇଗଲା । ବିଶ୍ୱସ୍ତ ହେଲେ ବି ବୋକା ଲୋକଟା ଉପରେ ଭରସା କରି ଥିବାରୁ ରାଜା ପ୍ରାଣ ହରେଇଲେ ।

**ତା'ପରେ କ'ଣ ହେଲା ?**

ରାଜାଙ୍କ ମୃତ୍ୟୁ ପରେ ତାଙ୍କ ପୁଅ ରାଜକୁମାର ରାଜା ହେଲେ । ସେ ମନ୍ତ୍ରୀଙ୍କୁ ଡାକି କହିଲେ- 'ବୋକା କି ମୂର୍ଖ ଚାକର ଆଉ ମୋ ପାଖରେ ରହିବେ ନାହିଁ । ସମସ୍ତ ବୋକା ଆଉ ମୂର୍ଖ

ଚାକରମାନଙ୍କୁ ନଅର ଭିତରୁ ବାହାର କରି ଗୋଟାଏ ବନ୍ଦୀଶାଳାରେ ରଖାଯାଉ । ତାଙ୍କ ଜାଗାରେ କେବଳ ଶିକ୍ଷିତ ଆଉ ଚତୁର ଲୋକମାନଙ୍କୁ ନିଯୁକ୍ତି ଦିଆଯାଉ'' ।

ନୂଆ ରାଜାଙ୍କ ଆଦେଶ ପାଳନ କରାଗଲା । ଚାରିଆଡ଼େ ଖାଲି ଧୋବ ଧୋବଳିଆ ଚାକର ଦେଖିବାକୁ ମିଳିଲା । ସେମାନେ କାମ କରିବା ଅପେକ୍ଷା ରାଜନୀତିରେ ବେଶି ମୁଣ୍ଡ ଖେଳେଇଲେ । ବିଭିନ୍ନ ପ୍ରକାର ସଂଘ ଗଠନ କରି ଅଧିକରୁ ଅଧିକ ସୁବିଧା ସୁଯୋଗ ପାଇଁ ଦାବି କଲେ । ସେମାନଙ୍କୁ କେହି ଚାକର ବୋଲି ନକହି ରାଜ-କର୍ମଚାରୀ କହିଲେ । କେତେଜଣ କର୍ମଚାରୀ ରାଜାଙ୍କ ନାମରେ ପ୍ରଜାମାନଙ୍କ ଉପରେ ଅତ୍ୟାଚାର ବି ଆରମ୍ଭ କରିଦେଲେ ।

ଥରେ ରାଜା ଶିକ୍ଷିତ- ଚତୁର କର୍ମଚାରୀମାନଙ୍କ କାମକୁ ସମୀକ୍ଷା କରି ଜାଣିଲେ । କାମ ବହୁତ କମ୍ ହେଉଛି । ଦରମା ଅଧିକ ଯାଉଛି । ଅଶାନ୍ତି ବଢୁଛି । ପ୍ରଜା ଦୁଃଖ ପାଉଛନ୍ତି । ସମସ୍ତେ କେବଳ କାମ ହେବା ଉଚିତ ବୋଲି କହୁଛନ୍ତି । କିନ୍ତୁ କାମ କରିବାକୁ କେହି ଆଗଭର ନୁହନ୍ତି ।

କିଛିଦିନ ପରେ ସମସ୍ତ କର୍ମଚାରୀ ଏକଯୁଟ ହୋଇ ରାଜାଙ୍କୁ ସିଂହାସନ ଛାଡିବାକୁ କହିଲେ । ଏଣିକି ନିର୍ବାଚନ ହେବ । ଲୋକେ ଯାହାକୁ ଚାହିଁବେ ସେ ଏ'ରାଜ୍ୟର ରାଜା ହେବ ।

କର୍ମଚାରୀଙ୍କ କଥା ଶୁଣି ରାଜା ନିରୁପାୟ ହେଇ ପଡ଼ିଲେ । ମନ୍ତ୍ରୀଙ୍କୁ ଡାକିବାରୁ ସେ କହିଲେ,- 'ମହାରାଜ ! କର୍ମଚାରୀମାନେ ଜଣେ ପ୍ରଜା ନେତାଙ୍କୁ ନୂଆ ରାଜା କରିବାକୁ ମନୋନୀତ କରିଛନ୍ତି । ତେଣୁ ଆପଣ ନିର୍ବାଚନରେ ଲଢ଼ିବାକୁ ପ୍ରସ୍ତୁତ ହେଇ ପଡ଼ନ୍ତୁ । ନଚେତ ଆପଣ ଜଣେ ସାଧାରଣ ପ୍ରଜାରେ ପରିଣତ ହେଇଯିବେ' ।

ମନ୍ତ୍ରୀଙ୍କ କଥା ଶୁଣି ରାଜାଙ୍କ ପାଟିରୁ ଆଉ କଥା ବାହାରିଲା ନାହିଁ । ମନ୍ତ୍ରୀ ପୁଣି ବୁଝେଇ ଦେଲେ,- 'ଆପଣଙ୍କ ପିତା ଭୁଲ କରି କେବଳ ବୋକାମାନଙ୍କୁ ନିଯୁକ୍ତି ଦେଇ ପ୍ରାଣ ହରେଇଥିଲେ । ଆପଣ ସେହିଭଳି କେବଳ ଚତୁର ଲୋକମାନଙ୍କୁ ନିଯୁକ୍ତି ଦେଇ କ୍ଷମତା ହରେଇଲେ । ଭଗବାନ ଏ'ସଂସାରକୁ ବିଭିନ୍ନ ପ୍ରକାର ଲୋକଙ୍କୁ ପଠାଇଛନ୍ତି । ସମସ୍ତେ ମିଳି ମିଶି ରହିଲେ, ସଂସାର ସୁନ୍ଦର ଭାବରେ ଚାଲେ । ଆପଣ ତ ଭୁଲ କରି ସାରିଛନ୍ତି । କେବଳ ଗୋଟିଏ ପ୍ରକାର କର୍ମଚାରୀ ସବୁ କାମ କରି ପାରନ୍ତି ନାହିଁ । ବୋକାମାନଙ୍କ ସହିତ ଚତୁର କର୍ମଚାରୀ ମିଶି ରହିଥିଲେ, ଏଭଳି ଅସୁବିଧା ହେଇ ନଥାନ୍ତା' ।





## ଦୁଇ ସାଙ୍ଗ ଓ ଭାଲୁ କଥା

**ଆମେ ପଢ଼ିଥିଲୁ-**

ଥରେ ଦୁଇଜଣ ସାଙ୍ଗ ବଣକୁ ବୁଲି ଯାଇଥିଲେ । ବାଟରେ ସେମାନେ ଗୋଟାଏ ଭାଲୁକୁ ଭେଟିଲେ । ଜଣେ ସାଙ୍ଗ ଗଛ ଚଢ଼ା ଶିଖିଥିଲା । ସେ ଭାଲୁକୁ ଦେଖି ତର୍‌ବର୍ ହୋଇ ଗଛ ଉପରକୁ ଚଢ଼ିଗଲା । ଆଉ ଜଣେ ସାଙ୍ଗ କିଛି ଉପାୟ ନପାଇ ମଲାପରି ତଳେ ପଡ଼ି ରହିଲା । ଭାଲୁ ତା'ପାଖକୁ ଆସି ଶୁଙ୍ଘିଦେଇ ଚାଲିଗଲା । ଭାଲୁ ସେଠାରୁ ଚାଲି ଯିବାପରେ ଦୁଇବନ୍ଧୁ ସାଙ୍ଗ ହୋଇ ଘରକୁ ଫେରିଲେ । ଗଛରେ ଚଢ଼ିଥିବା ସାଙ୍ଗ ଜଣକ ଅନ୍ୟ ସାଙ୍ଗକୁ ପଚାରିଲା-' ତୋ' କାନରେ ଭାଲୁ କ'ଣ କହୁଥିଲା କିରେ'?

ସାଙ୍ଗ ଜଣକ କହିଲା-'ଭାଲୁ କହିଲା, ବିପଦ ବେଳେ ଯେଉଁ ସାଙ୍ଗ ପାଖ ଛାଡ଼ି ପଳାଇଯାଏ, ତାକୁ ବିଶ୍ୱାସ କରିବା ଉଚିତ ନୁହେଁ ।

## ତା'ପରେ କ'ଣ ହେଲା ?

ସାଙ୍ଗର କଥା ଶୁଣି ଗଛଚଢ଼ା ସାଙ୍ଗର ମନ ଦୁଃଖ ହେଇଗଲା । ସେ ଜାଣି ଗଲା , ସାଙ୍ଗ ଜଣକ ତା' ଉପରେ ରାଗି ଯାଇଛି । ସେ ସାଙ୍ଗକୁ ବୁଝେଇ କହିଲା ,-'ତୁ ନିଶ୍ଚୟ ଭାଲୁର କଥାକୁ ବିଶ୍ୱାସ କରିଥିବୁ । କିନ୍ତୁ ସେ ଏମିତି କାହିଁକି କହିଲା , ସେକଥା ଜାଣିନାହୁଁ । ସେ ଚାହୁଁଥିଲା , ଆମ ଦୁଇ ଜଣଙ୍କୁ ମାରିଥା'ନ୍ତା । । କିନ୍ତୁ ମୁଁ ଗଛ ଉପରୁ ଥାଇ କାଳେ ତାକୁ ଆକ୍ରମଣ କରିଦେବି , ସେଇଥି ପାଇଁ ସେ ତୋତେ ମାରିଲା ନାହିଁ । ଆମ ଦି'ଜଣଙ୍କ ମନକୁ ଫଟେଇ ଦେବାକୁ ସେ ଏମିତି କଥା କହିଦେଇ ଚାଲିଗଲା । ମୁଁ ଯଦି ଗଛକୁ ଚଢ଼ି ଯାଇ ନଥା'ନ୍ତି , ତେବେ ଆମ ଦୁଇଜଣକୁ ନିଶ୍ଚୟ ଭାଲୁ ଗୋଡ଼େଇ ଗୋଡ଼େଇ କାମୁଡ଼ି ଥା'ନ୍ତା । ତୁ କେବେ ବି ଏମିତି ମଲା ପରି ପଡି ଆତ୍ମରକ୍ଷା କରି ପାରି ନଥା'ନ୍ତୁ । ତୁ ତୋ' ବୁଦ୍ଧିରେ ବଞ୍ଚିଲୁ । ମୁଁ ମୋ ବୁଦ୍ଧିରେ ରକ୍ଷା ପାଇଲି । ଏବେ କହ ମୁଁ ଠିକ୍ କରିଛି ନା ଭୁଲ କରିଛି' ?

ସାଙ୍ଗ ଜଣକ କହିଲା -'ତୁ ଯାହା କହିଲୁ , ତାହା ହିଁ ଠିକ୍ କଥା । ମୁଁ ଗଛ ଚଢ଼ା ଶିଖି ନାହିଁ ବୋଲି ତୁ ବି ଗଛ ଚଢ଼ି ଆତ୍ମରକ୍ଷା କରିବୁ ନାହିଁ , ଏ'କେମିତି କଥା ? ଆମେ ଦୁଇ ଜଣଯାକ ମରିବା ଅପେକ୍ଷା ଜଣେ ବଞ୍ଚିବା ବହୁ ଗୁଣେ ଭଲ । ତୋ' ପାଇଁ ମୋତେ ଭଗବାନ ଉପସ୍ଥିତ ବୁଦ୍ଧି ଦେଲେ । ଭାଲୁ କ'ଣ କଥା କହି ଜାଣେ ଯେ ସେ ମୋତେ ଏମିତି କହିବ? ମୁଁ ତୋତେ ଭୁଲ ବୁଝି ସେମିତି କହି ଦେଇଥିଲି । ଆମ ଭିତରେ ସନ୍ଦେହ ରହିବା ଉଚିତ ନୁହେଁ । ବରଂ ପରସ୍ପରର ମନକୁ ବୁଝି ଅନ୍ୟକୁ ସାହାଯ୍ୟ କରିବା ପାଇଁ ଶପଥ ନେବା' ।

ଦୁଇ ସାଙ୍ଗ କଥାବାର୍ତ୍ତା ହେଇ ନିଜ ନିଜର ମନ କଥାକୁ କହି ଦେଲେ । ଗଛଚଢ଼ା ସାଙ୍ଗ ଅନ୍ୟ ସାଙ୍ଗକୁ ମଧ୍ୟ ଗଛ ଚଢ଼ିବା ଶିଖାଇ ଦେଲା । ସେହି ଦିନଠାରୁ ଦୁଇସାଙ୍ଗ ମିଳିମିଶି ମଜାରେ ରହିଲେ ।





## ମାଆ ବେଙ୍ଗ ପେଟ ଫାଟିଲା

**ଆମେ ପଢ଼ିଥିଲୁ-**

ଗୋଟିଏ ମାଆ ବେଙ୍ଗ ତା'ର ଛୁଆମାନଙ୍କୁ ଗାତ ଭିତରେ ଛାଡ଼ିଦେଇ ଚରିବାକୁ ଯାଇଥିଲା । ସେ ଛୁଆମାନଙ୍କୁ ଆଗରୁ କହିଥିଲା,' ମୁଁ ହେଉଛି-ସମସ୍ତଙ୍କଠାରୁ ବଡ଼' ।

ମାଆବେଙ୍ଗ ଯିବାପରେ ଛୁଆମାନେ ପଦାକୁ ବାହାରି ଖେଳୁଥିଲେ । ସେହିବାଟ ଦେଇ ଗୋଟାଏ ଷଣ୍ଢ ଯାଉଥିଲା । ତାକୁ ଦେଖି ସେମାନେ ଡରିଗଲେ । ଆଗରୁ ସେମାନେ ଏତେ ବଡ଼ ଜନ୍ତୁକୁ କେବେ ଦେଖି ନଥିଲେ ।

ଚରାବୁଲା ସାରି ମାଆ ବେଙ୍ଗ ଫେରିଲା । ଛୁଆମାନେ ତାକୁ ଘେରି ଯାଇ କହିଲେ,-'ମାଆ ଲୋ ! ଆଜି ଗୋଟାଏ ବହୁତ ବଡ଼ ଜନ୍ତୁ ଦେଖିଲୁ । ସେ ତମଠାରୁ ଢେର ବଡ଼' ।

ମାଆ ବେଙ୍ଗ ଆଗରୁ ନିଜକୁ ସବୁଠୁଁ ବଡ଼ ବୋଲି କହିଥିଲା । ତେଣୁ ସେ ନିଜ ପେଟକୁ ଫୁଲାଇ ବଡ଼ ହେବାକୁ ଚେଷ୍ଟା କଲା । ଛୁଆମାନଙ୍କୁ ପଚାରିଲା -'ସେ ଜନ୍ତୁଟା କ'ଣ ମୋ ଠାରୁ ବଡ଼ ଥିଲା' ?

ଛୁଆମାନେ କହିଲେ-'ତମଠାରୁ ସେ ଢେର ବଡ଼ ମାଆ'!

ଥରକୁ ଥର ମାଆ ବେଙ୍ଗ ନିଜ ପେଟକୁ ଫୁଲାଇ ଛୁଆମାନଙ୍କୁ ପଚାରି ଚାଲିଲା,-'ଦେଖ ତ ଏତିକି ବଡ଼ ନା ଆହୁରି ବଡ଼ ଥିଲା '?

ପ୍ରତ୍ୟେକ ଥର ଛୁଆମାନେ କହୁଥା'ନ୍ତି-'ନାଇଁ ମାଆ ! ତମଠାରୁ ସେ ବହୁତ ବଡ଼'।

ମାଆବେଙ୍ଗକୁ ଛୁଆମାନଙ୍କ କଥା ଭାରି ଖରାପ ଲାଗିଲା। ତା'ମନରେ ତ ଅହଂକାର ଭରି ରହିଥିଲା। ସେ ନିଜର ସମସ୍ତ ବଳ ଖଟେଇ ପେଟକୁ ଫୁଲେଇ ଚାଲିଲା।

ଶେଷରେ ମାଆ ବେଙ୍ଗର ପେଟ ଫାଟିଗଲା।

**ତା'ପରେ କ'ଣ ହେଲା ?**

ମାଆ ବେଙ୍ଗର ପେଟ ଫାଟି ଯିବାରୁ ସେ ଛଟପଟ ହେଲା। ଛୁଆମାନେ ମାଆକୁ ଘେରି ପଡ଼ି କାନ୍ଦିଲେ। ମରିବା ପୂର୍ବରୁ ସେ ଛୁଆମାନଙ୍କୁ କହିଲା-' ପିଲେ ! ଆଉ କନ୍ଦା କଟା କରି କିଛି ଲାଭ ନାହିଁ। ମୁଁ ମରିବା ପୂର୍ବରୁ ଯାହା କହୁଛି, ତାକୁ ଭଲ କରି ମନେରଖ। ସେ ଷଣ୍ଢକୁ ତମେମାନେ କେବେ ବି ବଡ଼ କହିବ ନାହିଁ। କାରଣ ସେ ଷଣ୍ଢଠାରୁ ଢେର ବଡ଼ ବଡ଼ ଷଣ୍ଢ ମୁଁ ଆଗରୁ ଦେଖିଛି। ସବୁଠୁଁ ବଡ଼ ଷଣ୍ଢଠାରୁ ଆହୁରି ବଡ଼ ଜନ୍ତୁ ହେଉଛି- ହାତୀ। ତାକୁ ମଧ୍ୟ ମୁଁ ଦେଖିଛି। ହାତୀଠାରୁ ଆହୁରି ବଡ଼ ଜନ୍ତୁ ପାଣିରେ ରହେ। ତାକୁ କହନ୍ତି-ତିମି। ମୁଁ ଶୁଣିଛି, ତିମିଠାରୁ ଆହୁରି ବଡ଼ ଜନ୍ତୁ ଥିଲା-ଡାଇନୋସରସ୍। ଏଇମିତି ଦେଖୁ ଦେଖୁ ଜଣା ପଡ଼ିବ, ତା'ଠାରୁ ବି ଆହୁରି ବଡ଼ ଜନ୍ତୁ ଥିବେ।

ମୁଁ ଅହଂକାର କରି ନିଜକୁ ବଡ଼ କହି ଦେଇଥିଲି। ତେଣୁ ତା'ର ଫଳ ମୁଁ ସଙ୍ଗେ ସଙ୍ଗେ ପାଇଗଲି। ତମେ କେବେ ବି ନିଜକୁ ବଡ଼ ବୋଲି ଭାବିବ ନାହିଁ। ସମସ୍ତଙ୍କ ଠାରୁ ବଡ଼ ହେଉଛନ୍ତି, ଭଗବାନ। ସେ ସମସ୍ତଙ୍କ ଦୁଃଖ ସୁଖ ବୁଝି ପାରନ୍ତି। ସେ ଚାହିଁଲେ, ପ୍ରାଣୀଙ୍କୁ ବଡ଼ କରି ଦିଅନ୍ତି। ବଡ଼କୁ ଛୋଟ ବି କରି ଦିଅନ୍ତି। ମୋ ପରି ତମେମାନେ କେବେ ବି ଅହଂକାର କରିବ ନାହିଁ'।

ଏତିକି କହୁ କହୁ ମାଆ ବେଙ୍ଗର ଜୀବନ ଛାଡ଼ିଗଲା।





# ଟେକା ଟେକି କଥା

**ଆମେ ପଢ଼ିଥିଲୁ-**

କାଉଟିଏ ମାଂସ ଖଣ୍ଡିଏ ପାଇଥିଲା । ସେ ତାକୁ ଥଣ୍ଟରେ ଧରି ଗଛ ଡାଳରେ ଯାଇ ବସିଲା । ତଳେ ଥାଇ ବିଲୁଆଟି ମାଂସକୁ ଦେଖି ଭାବିଲା, କାଉ ଥଣ୍ଟରୁ ମାଂସ ଖଣ୍ଡକ ଖସି ପଡ଼ନ୍ତାକି ! ମଜାରେ ଖାଇ ଦିଅନ୍ତି । କିନ୍ତୁ କାଉ କ'ଣ ସହଜରେ ମାଂସକୁ ଛାଡ଼ିବ ?

ତେଣୁ ସେ ମନେ ମନେ ଗୋଟିଏ ଉପାୟ ଖଞ୍ଜିଲା । ଗଛ ମୂଳେ ଠିଆ ହୋଇ ସେ କାଉକୁ କହିଲା- ' କାଉ ଭାଇ ! ତମେ ମଧୁର ସ୍ୱରରେ ଗୀତ ଗାଇଲେ, ମୋତେ ବହୁତ ଭଲ ଲାଗେ । ଆଜି ମୋ ମନଟା ଭଲ ଲାଗୁନାହିଁ । ତମେ ଟିକେ ଗୀତ ଗାଇଲେ, ଖୁସି ହୁଅନ୍ତି' ।

କାଉ ଭାବିଲା, ମୋ ଗୀତକୁ ତ କେବେ କେହି ଶୁଣିବାକୁ ଭଲ ପାଆନ୍ତି ନାହିଁ । ଆଜି ବିଲୁଆଟା ଯଦି ଶୁଣିବାକୁ ଚାହୁଁଛି, ସୁନ୍ଦର ଗୀତ ପଦେ ଆଗ ଗାଇଦିଏ । ତା'ପରେ ମାଂସ ଖାଇବି ।

ତେଣୁ ସେ ଗଳା ଝାଡ଼ି ଗୀତ ଗାଇବାକୁ ଥଣ୍ଟକୁ ମେଲାଇ ଦେଲା । ତା'ଥଣ୍ଟରୁ ମାଂସ ଖଣ୍ଡକ ତଳେ ପଡ଼ିଗଲା ।

ତରବର ହୋଇ ବିଲୁଆ ମାଂସ ଖଣ୍ଡକୁ ଧରି କିଆବୁଦା ମୂଳକୁ ଚାଲିଗଲା । କାଉ ଏଥର ବିଲୁଆର ଚାଲାକି କଥା ଜାଣି ପାରିଲା । ସେ ତୁଚ୍ଛା ଟେକା ଟେକି କଥା ଶୁଣି ଠକି ଯାଇ ଥିବାରୁ ବହୁତ ମନଦୁଃଖ କଲା ।

**ତା'ପରେ କ'ଣ ହେଲା ?**

ବିଲୁଆ ମାଂସଖଣ୍ଡକୁ ନେଇ ଚାଲିଗଲା ପରେ କାଉ ମୁଣ୍ଡରେ ବୁଦ୍ଧି ପଶିଲା । ସେ ଗଛ ଡାଳରେ ବସି ମନକୁ ମନ କହିଲା-' ସମସ୍ତେ ମୋତେ ଚତୁର ପକ୍ଷୀ ଭାବରେ ଜାଣନ୍ତି । କିନ୍ତୁ ବଦମାସ ବିଲୁଆ ମୋତେ ମିଛ ପ୍ରଶଂସା କରି ଆଜି ବୋକା ବନେଇ ଦେଲା । ତେଣୁ ଆଜିଠାରୁ ମୁଁ କାହାରି ଟେକା ଟେକି କଥା ଶୁଣିବି ନାହିଁ । ସୁବିଧା ଦେଖି ବିଲୁଆକୁ ଥରେ ଠକେଇ ଦେବାକୁ ହେବ' ।

ଏ'କଥାକୁ କାଉ ମନରେ ରଖି ସେଠାରୁ ଉଡ଼ି ଚାଲିଗଲା ।

କେତେଦିନ ପରେ ଦିନେ ବିଲୁଆ କାଉକୁ ଦେଖି କହିଲା-'କିରେ କାଉ ଭାଇ ! ଅନେକ ଦିନ ହେଲା ତମର ଦେଖାନାହିଁ । ଏବେ କେଉଁଠି ରହୁଛ କି' ?

କାଉ କହିଲା-' ବିଲୁଆ ଭାଇ ! ତମେ ସେଦିନ ସିନା ମୋ ଗୀତଟିକୁ ଶୁଣି ପାରିଲ ନାହିଁ । କିନ୍ତୁ ସେହି ଗୀତଟିକୁ ବାଘମାମୁ ଭାରି ପସନ୍ଦ କଲେ । ଆଉ କହିଗଲେ,-'ତୁ ସବୁଦିନ ଯାଇ ମୋ ଗୁମ୍ଫା ଉପରେ ବସି ସୁନ୍ଦର ସ୍ୱରରେ ଗୀତ ଗାଇବୁ । ମୁଁ ସବୁଦିନ ତୋତେ ପେଟ ପୂରା ହରିଣ ମାଂସ ଖାଇବାକୁ ଦେବି' ।

ସେହିଦିନଠାରୁ ମୁଁ ବାଘମାମୁକୁ ଗୀତ ଶୁଣାଇବାକୁ ସେଇଠିକି ଯାଉଛି । ମଜାରେ ହରିଣ ମାଂସ ଖାଇ ରହୁଛି' ।

ହରିଣ ମାଂସ କଥା ଶୁଣି ବିଲୁଆ ପାଟିରୁ ଲାଳ ବୋହିଲା । ସେ କହିଲା-' ମୋତେ ଟିକେ ବାଘମାମୁ ଗୁମ୍ଫା ଦେଖେଇ ଦିଅନ୍ତ ନାହିଁ? ମୁଁ ବି ତମର ଗୀତକୁ ମନଭରି ସେଇଠି ଉପଭୋଗ

କରନ୍ତି । ଫେରବା ବେଳକୁ ଯାହା ହାଡ଼-ଗୋର ଖଣ୍ଡେ ଖାଇଦେଇ ଆସନ୍ତି' ।

କାଉ କହିଲା- 'ଠିକ୍ ଅଛି । ତମେ କାଲି ଭୋରୁ ଏଇଠିକି ଆସିବ । ମୁଁ ଗୀତ ଗାଇ ଗାଇ ଉପରେ ଉଡ଼ି ଉଡ଼ି ଯେଉଁ ବାଟେ ଯିବି । ତମେ ମୋତେ ଅନୁସରଣ କରି ଦୌଡ଼ି ଦୌଡ଼ି ସେହି ବାଟରେ ଯିବ । ବାଘମାମୁ ଘର ଗୁମ୍ଫା ତମକୁ ଦେଖେଇ ଦେବି । ସେଇଠି ମୋ ଗୀତ ଶୁଣିବ, ହରିଣ ମାଂସ ବି ଖାଇବାକୁ ପାଇବ' ।

କାଉ କଥା ଅନୁସାରେ ବିଲୁଆ ଯାଇ ବାଘମାମୁ ଗୁମ୍ଫା ପାଖରେ ପହଞ୍ଚିଗଲା ।

ଭୋକିଲା ବାଘଟିଏ ସେଇଠି ଶିକାର ଅପେକ୍ଷାରେ ଏପଟ ସେପଟ ହେଉଥିଲା । କାଉର କାଆ କାଆ ରାବରେ ସେ ଚଞ୍ଚଳ ହେଇ ଉଠିଲା । ଆଗରେ ବିଲୁଆକୁ ଦେଖି ସେ ଗୋଟିଏ ଝାମ୍ପରେ ତାକୁ ମାଡ଼ି ବସିଲା । ବିଲୁଆ ବାଘମାମୁ ପାଟି ଭିତରେ ଥାଇ କହୁଥିଲା-' ମାମୁ ! ମୁଁ କାଉର ଗୀତ ଶୁଣିବାକୁ ଆସିଛି । ମୋତେ ଛାଡ଼ିଦିଅ' ।

ଗୁମ୍ଫା ଉପରେ ବସି କାଉ କହିଲା-'ବିଲୁଆ ଭାଇ ! ଆଗ ବାଘମାମୁର ଗୀତ ଶୁଣି ସାର । ତା'ପରେ ମୁଁ ଗୀତ ଗାଇ ତମକୁ ଶୁଣେଇବି' ।

ବିଲୁଆ ଏଥର ଜାଣିଗଲା, ସେଦିନ କାଉକୁ ଠକି ଦେଇ ଥିବାରୁ ସେ ଆଜି ତାକୁ ବି ଠକେଇ ଦେଇଛି ।





# ବୁଦ୍ଧିର ବଳ-ବଡ଼ ବଳ

**ଆମେ ପଢ଼ିଥିଲୁ-**

ଥରେ ବଣର ସମସ୍ତ ପଶୁଙ୍କୁ ଡାକି ସିଂହ କହିଲା- ' ମୁଁ ଦିନକୁ ଗୋଟିଏ ଲେଖାଏଁ ପଶୁ ଖାଇବି । ତେଣୁ ତମେମାନେ ଜଣେ ଜଣେ ପାଳି କରି ମୋ ପାଖକୁ ଆସିବ । ଯଦି ମୋ ଆଦେଶକୁ କେହି ଅମାନ୍ୟ କରେ, ତେବେ ସେହିଦିନ ତା'ଛୁଆ-ପିଲାଙ୍କ ସହିତ ତାକୁ ବି ମାରିଦେବି' ।

ବଳୁଆ ଜନ୍ତୁ ସିଂହ କଥା ଅନୁସାରେ ବଣର ପଶୁମାନେ ପ୍ରତିଦିନ ଜଣେ ଲେଖା ତା'ର ଆହାର ହୁଅନ୍ତି । କିଛିଦିନ ପରେ ଠେକୁଆର ପାଳି ପଡ଼ିଲା । ଠେକୁଆ ଘରେ କାନ୍ଦ ବୋବାଳି ହେଲା । ଠେକୁଆ ବାଟରେ ଯାଉ ଯାଉ କେତେ କ'ଣ ଭାବୁଥାଏ । ହଠାତ୍ ତା' ମୁଣ୍ଡରେ ଗୋଟାଏ ବୁଦ୍ଧି ପଶିଲା । ସେ ଜାଣି ଜାଣି ଡେରି କରି ସିଂହକୁ ଦେଖା କଲା । ସିଂହ ତାକୁ ଡେରି ହେବାର କାରଣ ପଚାରିବାରୁ ସେ କହିଲା- ' ମହାରାଜ ! ମୁଁ ବାଟରେ ଆସୁଥିବା ବେଳେ ଆଉ ଗୋଟାଏ ସିଂହ ମୋତେ ଅଟକେଇ ଖାଇବାକୁ କହିଲା । ତାକୁ ମୁଁ ବୁଝା ବୁଝି କରି ଆସୁ ଆସୁ ଡେରି ହେଇଗଲା' ।

ଠେକୁଆ କଥା ଶୁଣି ସିଂହ ଭୀଷଣ ରାଗି ଯାଇ କହିଲା-'ମୋ ରାଜ୍ୟରେ ପୁଣି ଗୋଟାଏ ସିଂହ କେମିତି ପଶିଲା ? ସେ ରହୁଛି କେଉଁଠି ? ଚାଲ, ଆଗ ମୋତେ ତାକୁ ଦେଖେଇ ଦେବୁ । ମୁଁ ତାକୁ ମାରି ସାରିଲେ, ତା'ପରେ ତୋତେ ଖାଇବି' ।

ଠେକୁଆ ପଛେ ପଛେ ଯାଇ ସିଂହ ଗୋଟାଏ ପୁରୁଣା ଗଭୀର କୂଅ ପାଖରେ ପହଞ୍ଚିଲା । ଠେକୁଆ ତାକୁ କହିଲା- ମହାରାଜ ! ଏହି କୂଅ ଭିତରେ ସେ ସିଂହ ରହୁଛି' ।

ସିଂହ କୂଆ ଭିତରକୁ ଚାହିଁ ଦେଖିଲା- ସତରେ ଆଉ ଗୋଟାଏ ସିଂହ ତାକୁ ଦେଖାଯାଉଛି । ସେ କୁଦାମାରି କୂଅ ଭିତରକୁ ଡେଇଁ ପଡ଼ି ପ୍ରାଣ ହରାଇଲା ।

## ତା'ପରେ କ'ଣ ହେଲା ?

ସିଂହ ମରିଯିବା ଖବର ବିଜୁଳି ବେଗରେ ବଣରେ ପ୍ରଚାରିତ ହେଇଗଲା । ବଣରେ ଥିବା ପଶୁମାନେ ଗୋଟିଏ ପାହାଡ଼ ଉପରକୁ ଯାଇ ନୂଆ ରାଜା ବାଛିବାକୁ ସଭା କଲେ ।

ବିଲୁଆ କହିଲା-'ଠେକୁଆ ବଳୁଆ ସିଂହକୁ ତା' ବୁଦ୍ଧି ବଳରେ ମାରି ପାରିଛି । ତେଣୁ ସେ ବଣର ରାଜା ହେଉ' ।

ଭାଲୁ କହିଲା-' ବାଘ ହେଉଛି, ଅନ୍ୟତମ ବଳୁଆ ପଶୁ । ତେଣୁ ତାକୁ ରାଜା କରାଯାଉ' ।

ଘୋଡ଼ା କହିଲା-' ବାଘ ଗୋଟାଏ ମାଂସାହାରୀ ପଶୁ । ସିଏ ବି ପାଳି କରି ପଶୁଙ୍କୁ ଖାଇବ । ତେଣୁ ଶାକାହାରୀ ଜୀବ ହାତୀକୁ ବଣରେ ରାଜା କଲେ, ସମସ୍ତେ ନିରାପଦରେ ରହି ପାରିବେ ।

ଗଛ ଉପରୁ ଥାଇ ପାତି କହିଲା-'ହାତୀଟା ଦେଖିବାକୁ ସିନା ବଡ଼ । କିନ୍ତୁ ତା'ର ବୁଦ୍ଧି ନାହିଁ । ସେ ଆମକୁ କେମିତି ସୁରକ୍ଷା ଦେଇ ପାରିବ ? ତେଣୁ ଚତୁର ପଶୁ ହନୁ ମାଙ୍କଡ଼କୁ ବଣର ରାଜା କରାଯାଉ । ସେ ମଣିଷ ପରି ବୁଦ୍ଧିଆ ଆଉ ସାହସୀ । ମାଟିରେ ଦୌଡ଼ି ପାରେ, ଗଛରେ ବି ଚଢ଼ିପାରେ । ସେ ରାଜା ହେଲେ ସମସ୍ତଙ୍କୁ ସାହାଯ୍ୟ କରି ପାରିବ' ।

ପାତିର କଥା ସରିଛି କି ନାହିଁ, ଗଧିଆ କହିଲା-'ମାଙ୍କଡ଼ ହାତରେ ଶାଳଗ୍ରାମ । ସେ ରାଜା ହେଲେ, ଏ'ରାଜ୍ୟ ଆଉ ରହିବ ? ତା' କଥା ଛାଡ଼ । ସବୁଠୁ ଭଲ ହେବ, ଯେଉଁ ବୁଦ୍ଧିଆ ଠେକୁଆ ଯିଏ ବଦମାସ ରାଜାକୁ ମାରି ପାରିଛି, ସିଏ ହିଁ ରାଜା ହେଉ' ।

ହାତୀ କହିଲା-' ଠିକ୍ ଅଛି । ସବୁ ପଶୁଙ୍କର ତ କିଛି କିଛି ଦୋଷ ଦୁର୍ବଳତା ରହି ଯାଇଛି ।

ଆଉ ଏତେ ସମୟ ନଷ୍ଟ ନକରି ସେହି ଠେକୁଆକୁ ରାଜା କରି ଦିଆଯାଉ । କାରଣ ସେ ହିଁ ଆମର ଶତ୍ରୁକୁ ମାରି ପାରିଛି । ଆମେ ସମସ୍ତେ ମିଶି ତାକୁ ସାହାଯ୍ୟ କରିବା' ।

ହାତୀ କଥାକୁ ସମସ୍ତେ ସମର୍ଥନ କଲେ । ଠେକୁଆ ବଣର ରାଜା ହେଇଗଲା ।

କିଛିଦିନ ପରେ ଦେଖାଗଲା, ବଣର ପଶୁମାନେ କେହି କାହାରିକୁ ମାନୁ ନାହାନ୍ତି । ବଳୁଆ ପଶୁମାନେ ନିରୀହ ପଶୁମାନଙ୍କୁ ମାରି ଖାଇ ଯାଉଛନ୍ତି । ଠେକୁଆ ରାଜା ପାଖକୁ କୌଣସି ପ୍ରକାର ଅଭିଯୋଗ ଆସୁନାହିଁ । ଠେକୁଆକୁ ସମସ୍ତେ ଦୁର୍ବଳ ପଶୁ ମନେକରି କେହି ତା'ର ପରାମର୍ଶ ଚାହୁଁ ନାହାନ୍ତି ।

ସମଗ୍ର ବଣ ରାଜ୍ୟରେ ଅରାଜକତାକୁ ଦେଖି ଠେକୁଆ ଭାବିଲା-'ମୁଁ ସମସ୍ତ ପଶୁ ଜାତିକୁ ରକ୍ଷା କରିବା ପାଇଁ ସିଂହକୁ ମାରି ଥିଲି । କିନ୍ତୁ ଏବେ ତ ବଣରେ ଶହଶହ ନକିଲି ସିଂହ ଅତ୍ୟାଚାର କଲେଣି । କିଏ କେତେବେଳେ ଆସି ତାକୁ ବି ଖାଇ ଯାଇପାରେ । ତେଣୁ ବଣରାଜ୍ୟର ସୁରକ୍ଷା ପାଇଁ ଜଣେ ବଳୁଆ ଶାସକ ଦରକାର । ଯାହାକୁ ସମସ୍ତେ ଭୟ କରୁଥିବେ' ।

ଦିନେ ଠେକୁଆ ଅନ୍ୟ ରାଜ୍ୟକୁ ଯାଇ ଆଉ ଗୋଟାଏ ସିଂହକୁ ନିମନ୍ତ୍ରଣ କରି ଆଣିଲା । ତା' ହାତରେ ରାଜ୍ୟର ଭାର ଦେଇ ସେ ନିଶ୍ଚିନ୍ତରେ ରହିଲା ।

ନୂଆ ସିଂହ ରାଜା ହେବାରୁ ଅନ୍ୟ ପଶୁମାନେ ପୁଣି ଶୃଙ୍ଖଳିତ ହୋଇ ବଣରେ ଚଳିଲେ ।





# ପଣ୍ଡିତ ଓ ନାଉରିଆ କଥା

**ଆମେ ପଢ଼ିଥିଲୁ-**

ଥରେ ଜଣେ ପଣ୍ଡିତ ଡଙ୍ଗାରେ ନଈ ପାରି ହେଉଥିଲେ । ସେ ସବୁବେଳେ ତାଙ୍କର ପାଣ୍ଡିତ୍ୟକୁ ଦେଖାଇବା ପାଇଁ ଲୋକଙ୍କୁ ଶାସ୍ତ୍ରଜ୍ଞାନ ଉପରେ ପ୍ରଶ୍ନ ପଚାରନ୍ତି । ସେଦିନ ନାଉରିଆକୁ ଏକୁଟିଆ ପାଇ ସେ ପଚାରିଲେ- 'କିରେ ! ତୁ ପାଠ ପଢ଼ିଛୁ' ?

ନାଉରିଆ ମୁଣ୍ଡ ହଲେଇ ନାହିଁକଲା ।

ପଣ୍ଡିତେ ମୁରୁକି ହସି କହିଲେ-"ତୁ ଜଣେ ମଣିଷ ହେଇ ପାଠ ପଢ଼ିନାହୁଁ । ଜାଣିରଖ,ପାଠ ନପଢ଼ି ଥିବାରୁ ତୋ' ଜୀବନର ପଚିଶ ଭାଗ ବେକାର ହେଇଗଲା" ।

ପୁଣିଥରେ ପଣ୍ଡିତେ ପଚାରିଲେ-"ତୁ ଭାଗବତ ଶୁଣିଛୁ" ?

ନାଉରିଆ ପୁଣି ମୁଣ୍ଡ ହଲେଇ ନାହିଁ କରିଦେଲା ।

ପଣ୍ଡିତେ କହିଲେ-"ତୁ ଭାଗବତ ବି ଶୁଣି ନାହୁଁ, ତା'ହେଲେ ମନେରଖ; ତୋ' ଜୀବନର ପଚାଶ ଭାଗ ବେକାର ହେଇଗଲା । ତେବେ, ତୁ ନିଶ୍ଚୟ ମହାଭାରତ କାହାଣୀ ଶୁଣିଥିବୁ" !

ଏଥର ବି ସେ ମୁଣ୍ଡ ହଲେଇ ନାହିଁକଲା ।

ପଣ୍ଡିତେ ହୋ ହୋ ହୋଇ ଜୋର୍‌ରେ ହସି ଉଠି କହିଲେ- "ତେବେ ମୋଟା ମୋଟି ଭାବରେ ତୋର ଅଶୀ ଭାଗ ଜୀବନ ବେକାର ହେଇ ଯାଇଛି" ।

ସେତେବେଳକୁ ଡଙ୍ଗା ନଈ ମଝିରେ ପହଞ୍ଚି ଯାଇଥିଲା । ପବନର ଗତି ବଢ଼ି ଚାଲିବାରୁ ଡଙ୍ଗା ଟଳମଳ ହେଲା । ପଣ୍ଡିତେ ଭୟରେ ଥରିବାକୁ ଲାଗିଲେ । ତାଙ୍କୁ ଦେଖି ନାଉରିଆ କହିଲା- "ପଣ୍ଡିତେ ଏବେ ଡଙ୍ଗାଟା ବୁଡ଼ିଯାଇ ପାରେ । ମୁଁ ତ ପହଁରି ସେ ପଟକୁ ଚାଲିଯିବି । ଆପଣ ପହଁରା ଜାଣିଛନ୍ତି ତ" ?

ପଣ୍ଡିତେ ମୁଣ୍ଡ ହଲେଇ ମନାକଲେ । ନାଉରିଆ କହିଲା-ଆପଣ ପହଁରା ଜାଣି ନାହାନ୍ତି ? ତେବେ ତ ଆପଣଙ୍କ ଜୀବନଟା ଶହେଭାଗ, ମାନେ ସମ୍ପୂର୍ଣ୍ଣ ବେକାର ହେଇଗଲା ।

**ତା'ପରେ କ'ଣ ହେଲା ?**

ନଈ ମଝିରେ ବୁଡ଼ି ମରିଯିବା ଭୟରେ ପଣ୍ଡିତେ ବିକଳ ହେଉଥା'ନ୍ତି । ସେ ମନେ ମନେ ଭାବୁଥିଲେ, "ମୁଁ ଦୁନିଆ ଯାକର ଲୋକଙ୍କୁ ଜ୍ଞାନ ଦେଇ ଦେଇ ଶେଷରେ ଅଜ୍ଞାନ ନାଉରିଆ ପାଖରେ ହାର ମାନିଗଲି । ମୁଁ ପୁଳାଏ ଶାସ୍ତ୍ର ଜ୍ଞାନ ଅର୍ଜନ କଲେ କ'ଣ ହେବ ? ନଈ ମଝିରେ ତ ନିଶ୍ଚୟ ବୁଡ଼ି ମରିବି"।

ନାଉରିଆ କହିଲା- "ପଣ୍ଡିତେ ! ଡଙ୍ଗା ଯେତେ ହଲିଲେ ବି ତମେ ନଡ଼ରି ଡଙ୍ଗାକୁ ଭିଡ଼ି ଧରିଥିବ । ପାଣିକୁ ଡେଇଁବାକୁ କେବେ ବି ଚେଷ୍ଟା କରିବ ନାହିଁ । ଏଠି ତମ ଶାସ୍ତ୍ର ଜ୍ଞାନ କାମ କରିବ ନାହିଁ । ତେଣୁ ମୋ କଥାକୁ ମନେ ରଖିଥିବ" ।

ସତକୁ ସତ ଡଙ୍ଗାଟା ହଲି ହଲି ଯାଇ କୂଳରେ ଲାଗିଗଲା । ପଣ୍ଡିତେ ନାଉରିଆ ଆଗରେ ଦୁଇ ହାତ ଯୋଡ଼ି କହିଲେ, 'ତୁ ହିଁ ମୋତେ ନୂଆ ଜୀବନ ଦେଇଦେଲୁ । ତୁ ଆଜି ମୋ ଆଖିରୁ ଅନ୍ଧ ପୁଟୁଳିକୁ ବି ଖୋଲି ଦେଇଛୁ । ଖାଲି ଶାସ୍ତ୍ର ପାଠ କରି ମଣିଷ ସଂସାରରେ ବଞ୍ଚି ରହି ପାରିବ ନାହିଁ । ବାସ୍ତବ ଜ୍ଞାନ ଶାସ୍ତ୍ର ଜ୍ଞାନଠାରୁ ଅନେକ ବଡ଼ । ପାଠ ଅପେକ୍ଷା ଶାଠର ଦରକାର ବହୁତ ବେଶି । ମୋ ମନରେ ଥିବା ଅହଂକାରକୁ ତୁ ଆଜି ଭାଙ୍ଗି ଦେଇଛୁ । ତୋତେ ଆଜି ମୁଁ ଗୁରୁ ହିସାବରେ ମାନିନେଲି । ମୋତେ ଟିକେ ନଈ ପହଁରା ଶିଖେଇ ଦେବୁ । ତୁ ଭାଗବତ କି ରାମାୟଣ ନପଢ଼ିଲେ, ବଞ୍ଚି ଯାଇ ପାରିବୁ । କିନ୍ତୁ ମୁଁ ପହଁରା ନଶିଖିଲେ ତ ନିଶ୍ଚୟ ଦିନେ ନା ଦିନେ ବୁଡ଼ି ମରିଯିବି ।





# ନୀଳବର୍ଣ୍ଣ ଶୃଗାଳ କଥା

**ଆମେ ପଢ଼ିଥିଲୁ-**

ଥରେ ଗୋଟାଏ ବିଲୁଆ ଧୋବା ଡୁଠରେ ଥିବା ନେଳିଆ ପାଣିରେ ପଡ଼ିଯାଇ ନୀଳରଙ୍ଗ ଦେଖାଗଲା । ତାକୁ ଦେଖି ଅନ୍ୟ ପଶୁମାନେ ଚିହ୍ନି ପାରିଲେ ନାହିଁ । ଚତୁର ବିଲୁଆ ସେମାନଙ୍କୁ ନିଜର ପରିଚୟ ଦେଇ କହିଲା- ' ଜଙ୍ଗଲରେ ରାଜାହେଇ ତୁମମାନଙ୍କୁ ଶାସନ କରିବାକୁ ମୋତେ ଭଗବାନ ପଠାଇଛନ୍ତି । ମୁଁ ଆଜିଠାରୁ ତମମାନଙ୍କର ରାଜା ହେଲି' ।

ଆଗରୁ ଏମିତି ରଙ୍ଗର ନୂଆ ପଶୁଙ୍କୁ କେହି ଦେଖି ନଥିଲେ । ସେମାନେ ତା' କଥାକୁ ବିଶ୍ୱାସ କରି ରାଜା ହିସାବରେ ଗ୍ରହଣ କରିନେଲେ । ରାଜା ହେବାପରେ ସେ ବିଲୁଆମାନଙ୍କୁ ନିଜର ବଂଶଧର ବୋଲି ମାନିଲା ନାହିଁ । ତେଣୁ ବିଲୁଆମାନେ ମିଳିତ ହୋଇ ଦିନେ ହୁକେ-ହୋ କରି ରଡ଼ି ଛାଡ଼ିଲେ । ବିଲୁଆ ରାଜା ନିଜର ପ୍ରକୃତି ଅନୁସାରେ ତାଙ୍କ ସହିତ ମିଶି ରଡ଼ିଲା । ରାଜାଙ୍କ ରଡ଼ି ଶୁଣି ଅନ୍ୟମାନେ ତାକୁ ଚିହ୍ନି ପକାଇଲେ । ମିଛୁଆ ବିଲୁଆକୁ ସମସ୍ତେ ଘେରିପଡ଼ି ମାରିଦେଲେ ।

## ତା'ପରେ କ'ଣ ହେଲା ?

ବିଲୁଆ ମଲାପରେ ଜଙ୍ଗଲର ପଶୁମାନେ ସଭା କରି ଠିକ୍ କଲେ, ଏମିତି ଅଜଣା ଅଶୁଣା ପଶୁକୁ ଆମେ କେହି କେବେ ରାଜା ବୋଲି ଗ୍ରହଣ କରିବା ନାହିଁ । ଯିଏ ବୁଦ୍ଧିରେ ଆଉ ବଳରେ ବଡ଼ ଥିବ, ପ୍ରଜାମାନଙ୍କୁ ନିଜର ପୁଅ ପରି ପାଳି ପାରୁଥିବ; ତାକୁ ଆମେ ରାଜା ହିସାବରେ ଅଭିଷେକ କରାଇ ଦେବା ।

ତେଣୁ ସମସ୍ତେ ଜଙ୍ଗଲ ସାରା ବୁଲି ଯୋଗ୍ୟ ରାଜାଙ୍କୁ ଖୋଜି ଚାଲିଲେ । କିନ୍ତୁ ସେମିତି ପଶୁ କାହାରିକୁ ମିଳିଲେ ନାହିଁ ।

ସିଂହ କି ବାଘକୁ ରାଜା କରେଇଲେ, ସେମାନେ ତ ନିରୀହ ପଶୁମାନଙ୍କୁ ମାରି ଖାଇଯିବେ । ହାତୀ କି ଗଣ୍ଡାଙ୍କର ତ ବୁଦ୍ଧି କମ୍ । ସେମାନଙ୍କୁ ରାଜା କରେଇଲେ, ଅନ୍ୟମାନେ ତାଙ୍କୁ ଭୂଆ ବୁଲେଇ ଦେବେ । ବିଲୁଆ ଆଉ ଗଧିଆ ଜାତିର ପଶୁମାନେ ତ ଅଇଁଠା ଖିଆ ଜୀବ । ହାଡ଼ ଗୋଡ଼ ଦି'ଖଣ୍ଡ କେଉଁଠି ପଡ଼ିଛି, ତାଙ୍କର ଲକ୍ଷ୍ୟ ସେଇଠି ଥିବ । ସେମାନେ କ'ଣ ରାଜା ହେଇ ପାରିବେ ?

ମାଙ୍କଡ଼ କଥା ଛାଡ଼ । ସେ କେବେ କେଉଁଠି ସ୍ଥିର ହେଇ ରହି ପାରିବ ନାହିଁ । ଏ'ଗଛରୁ ସେ ଗଛ ଡେଇଁ ବୁଲୁଥିବ । ସେ ରାଜା ହେବା ତ ଦୂରର କଥା ଭଲ ପ୍ରଜାଟିଏ ବି ହେଇ ପାରିବ ନାହିଁ ।

ଷଣ୍ଢ ମଇଁଷି କି ଘୋଡ଼ା କଥା ବି ବିଚାରକୁ ନିଆଗଲା ନାହିଁ । ସେମାନେ ମଣିଷଙ୍କ ସହିତ ରହି ସଭ୍ୟ ହେଇଛନ୍ତି । ଅନେକ ନୂଆ କଥା ଜାଣିଛନ୍ତି । ହିଂସାଠାରୁ ସେମାନେ ବହୁତ ଦୂରରେ ରହନ୍ତି । ସେମାନଙ୍କ ଭିତରୁ ଜଣକୁ ନିମନ୍ତ୍ରଣ କରି ଆଣିଲେ, ଭଲ ହେବ ବୋଲି ପ୍ରସ୍ତାବ ଆସିଲା ।

କେହି ଜଣେ ମନେ ପକାଇ ଦେଲା । ଷଣ୍ଢ ତ ମଣିଷମାନଙ୍କ ସହିତ ରହି ରହି ଅଳସୁଆ ହେଇ ଗଲାଣି । ତା'ର ମୋଟା ଦେହକୁ ଦେଖି ଜଣା ପଡ଼ି ଯାଉଛି ଯେ, ସେ ଜଙ୍ଗଲର ରାଜା ହେଇ ପାରିବ ନାହିଁ ।

ଘୋଡ଼ା ଓ ମଇଁଷିମାନେ ମଣିଷର ଚାକର ଭଳି କାମ କରୁଛନ୍ତି । ସେମାନେ କି' ରାଜା ହେବେ ? ବରଂ ରାଜ୍ୟ ଯାକର ପଶୁଙ୍କୁ ନେଇ ସେମାନେ ମଣିଷର ଚାକର କରେଇ ଦେବେ ।

ଏଇମିତି ବିଚାର କରୁକରୁ ବହୁତ ସମୟ ବିତିଗଲା । କୌଣସି ପ୍ରକାର ନିଷ୍ପତ୍ତି ନିଆଯାଇ ପାରିଲା ନାହିଁ । ତେଣୁ ଯେତେ ଦିନ ଯାଏ ଯୋଗ୍ୟ ପଶୁ ନମିଳିଛି, ସେତେ ଦିନ ଯାଏ ବିନା ରାଜାରେ ରାଜ୍ୟ ରହିଲେ ବରଂ ଭଲ ହେବ ବୋଲି ସମସ୍ତେ କହିଲେ ।





## ବଗ ଓ କଙ୍କଡ଼ା କଥା

**ଆମେ ପଢ଼ିଥିଲୁ-**

ବଗଟିଏ ସବୁଦିନ ଆସି ପୋଖରୀ କୂଳରେ ବସେ । ଛୋଟ ଛୋଟ ମାଛଙ୍କୁ ଧରିଖାଏ । ଧୀରେ ଧୀରେ ମାଛମାନେ ବଗକୁ ଚିହ୍ନିଗଲେ । ସେମାନେ ସାବଧାନ ହୋଇ ବଗଠାରୁ ଦୂରେଇ ରହିଲେ । ବଗ ଆଉ ମାଛମାନଙ୍କୁ ଧରି ପାରିଲା ନାହିଁ । ତେଣୁ ସେ ଗୋଟାଏ ଉପାୟ ଖଞ୍ଜିଲା । ମାଛମାନଙ୍କୁ ଡାକି କହିଲା-'ମାଛ ଭାଇମାନେ ! ମୋ କଥା ମନ ଦେଇ ଶୁଣ । ମୁଁ ଏବେ ମାଛ ଖାଇବା ଛାଡ଼ି ଦେଇଛି । ଏତେଦିନ ତୁମମାନଙ୍କ ସହିତ ରହିବା ଫଳରେ ତୁମମାନଙ୍କ ପ୍ରତି ମୋର ମମତା ବଢ଼ି ଯାଇଛି । ତେଣୁ ତୁମମାନଙ୍କ ମଙ୍ଗଳ କାମନା କରିବା ମୋର କର୍ତ୍ତବ୍ୟ । ଗତକାଲି କେତେଜଣ ମାଛ ଧରାଳୀ କଥା ହେଉଥିଲେ, ଏହି ପୋଖରୀରେ ବହୁତ ମାଛ ଅଛନ୍ତି । ସାତଦିନ ପରେ ସେମାନେ ବଡ଼ ଜାଲ ଆଣି ସବୁମାଛ ଧରିନେବେ । ମୁଁ କୂଳରେ ବସି ଏକଥା ଶୁଣିଛି । ଏଇ ଅଳ୍ପ

ଦୂରରେ ମୁଁ ଗୋଟାଏ ବଡ଼ ପୋଖରୀ ଦେଖି ଆସିଛି । ତମେମାନେ ଯଦି କହିବ, ତେବେ ମୁଁ ତମକୁ ଜଣ ଜଣ କରି ନେଇ ସେ ପୋଖରୀରେ ଛାଡ଼ି ଦେଇ ଆସିବି । ସେଇଠି ତମେମାନେ ଆରାମରେ ରହିବ' ।

ବଗର କଥା ଶୁଣି ମାଛମାନେ ସେହି ନୂଆ ପୋଖରୀକୁ ଯିବାକୁ ବ୍ୟସ୍ତ ହେଇ ପଡ଼ିଲେ । ବଗ ଗୋଟିଏ ଗୋଟିଏ କରି ମାଛକୁ ନେଇ କିଛି ଦୂରରେ ଥିବା ଗଛରେ ବସି ଖାଇଲା । ଥରେ ଗୋଟାଏ କଙ୍କଡ଼ାକୁ ନେଇ ବଗ ଉଡ଼ି ଯାଉଥିବା ସମୟରେ ସେ ମାଛମାନଙ୍କର କଣ୍ଟାକୁ ଦେଖି ପାରିଲା । ବଗର ଅସଲ ଉଦ୍ଦେଶ୍ୟକୁ ବୁଝିପାରି ତା'ଗଳାକୁ ଧାରୁଆ ଦାନ୍ତରେ କାମୁଡ଼ି ଦେଲା ।

**ତା'ପରେ କ'ଣ ହେଲା ?**

ବଗର ଗଳାକୁ କଙ୍କଡ଼ା କାମୁଡ଼ି ଧରିବାରୁ ସେ ଛଟପଟ ହେଇ ତଳେ ଖସି ପଡ଼ିଲା । ଏଣେ କଙ୍କଡ଼ାର ଅବସ୍ଥା ଖରାପ । ସିଏ ବି ବଗ ସହିତ ଉପରୁ ଖୁବ୍ ଜୋରରେ ତଳେ କଚାଡ଼ି ହେଇ ପଡ଼ିଥିଲା । ତା'ର ଟାଣୁଆ ଖୋଳପାଟି ଭାଙ୍ଗି ଚୂରମାର ହେଇଗଲା । ସେ ଜୀବନ ବିକଳରେ ବଗର ବେକକୁ ଛାଡ଼ିଦେଲା । ବଗର ବେକ ଛିଡ଼ି ଯାଇଥିଲେ ବି ତା'ର ପର ଥିବାରୁ ସେ ତଳେ ପଡ଼ି ମଧ୍ୟ ବଞ୍ଚିଥିଲା । କିନ୍ତୁ କଙ୍କଡ଼ାର ଖୋଳପା ଭାଙ୍ଗି ଯାଇଥିବାରୁ ସେ ଛଟପଟ ହେଉଥିଲା । ତା'ର ଅବସ୍ଥାକୁ ଦେଖି ବଗ କହିଲା-'ଆମେ ପରସ୍ପରକୁ ମାରି ଦେବାକୁ ଚକ୍ରାନ୍ତ କରିଥିଲେ । ତା'ର ଫଳ ଆମେ ପାଇ ସାରିଲେଣି । ମୁଁ ମରିବା ପୂର୍ବରୁ ମାଛମାନଙ୍କୁ କ୍ଷମା ମାଗିନେବି । ତୁ ମରିବା ପୂର୍ବରୁ ମୋତେ କହ, ତୋର ଶେଷ ଇଚ୍ଛା କ'ଣ' ?

କଙ୍କଡ଼ା କହିଲା-'ବଗମାମୁ ! ମୁଁ ମାଛ ବଂଶକୁ ରକ୍ଷା କରିବା ପାଇଁ ଚେଷ୍ଟା କରିଥିଲି । କିନ୍ତୁ ପାରିଲି ନାହିଁ । ମୁଁ ମରିଗଲେ, ତମେ ମୋ ମାଂସକୁ ଖାଇଦେବ ନାହିଁ । ଦୟାକରି ମୋ ଶବକୁ ନେଇ ମୋ ପ୍ରିୟ ମାଛମାନଙ୍କ ପାଖରେ ପକେଇ ଦେବ । ସେମାନଙ୍କୁ କହିଦେବ, କଙ୍କଡ଼ା ଭାଇ ତାଙ୍କର ସହିଦ ହେଇ ଯାଇଛି' ।

କଥା କହୁ କହୁ କଙ୍କଡ଼ାର ଜୀବନଟା ଛାଡ଼ିଗଲା । ବଗ କଙ୍କଡ଼ାର ଶବକୁ ନେଇ ପୋଖରୀ କୂଳରେ ଥୋଇ ଦେଇ ମାଛମାନଙ୍କୁ ଡାକି କହିଲା- 'ମାଛ ଭାଇମାନେ ! ମୁଁ ତମମାନଙ୍କ ସହିତ ବିଶ୍ୱାସ ଘାତକତା କରିଥିଲି । ତା'ର ଫଳ ପାଇ ସାରିଲିଣି । କଙ୍କଡ଼ା କାମୁଡ଼ାରେ ମୁଁ ମରିବାକୁ ଯାଉଛି । ତମେମାନେ କଙ୍କଡ଼ା ପାଇଁ ବଞ୍ଚି ଯାଇଛ । ମୋତେ ତମେମାନେ କ୍ଷମା କରିଦେବ' ।

ବଗ କଥା କହୁ କହୁ ସେଇଠି ଢଳି ପଡ଼ିଲା ।





## ହଂସ ଓ କଇଞ୍ଛ କଥା

**ଆମେ ପଢ଼ିଥିଲୁ-**

ପ୍ରତିଦିନ ଦୁଇଟି ହଂସ ଆସି ଗୋଟିଏ ପୋଖରୀରେ ପହଁରନ୍ତି । ସେହି ପୋଖରୀରେ ଥିବା କଇଞ୍ଛ ସହିତ ସେମାନେ ମିତ ବସିଥିଲେ । ଦିନେ କଇଞ୍ଛ ହଂସକୁ ଡାକି କହିଲା - 'ତମରି ଭଳି ମୋତେ ଆକାଶରେ ଉଡ଼ିବାକୁ ଭାରି ଇଚ୍ଛା ହେଇଛି । ମୋତେ କେମିତି ଟିକେ ଉପରକୁ ନେଇ ଯାଆନ୍ତ ନି'?

କଇଞ୍ଛର କଥାକୁ ଶୁଣି ହଂସମାନେ କହିଲେ - 'ଆମେ ଦୁଇଜଣ ଖଣ୍ଡେ କାଠିକୁ ଦୁଇ ପାଖରୁ ଧରିବୁ । ତମେ କାଠିର ମଝିକୁ କାମୁଡ଼ି ଧରିବ । ତା'ପରେ ଆମେ ତମକୁ ଆକାଶକୁ ନେଇ ବୁଲେଇ ଆଣିବୁ । କିନ୍ତୁ ତମେ କେବେ ବି ପାଟି ଖୋଲିବ ନାହିଁ ।

ହଂସ କଥାରେ କଇଞ୍ଛ ରାଜି ହେଇଗଲା । କାଠି ମଝିକୁ କାମୁଡ଼ି ଧରି କଇଞ୍ଛ ଆକାଶରେ ଉଡ଼ି ଯାଉଥିବା ବେଳେ, କେତେଜଣ ପିଲା ଏ'ଭଳି ଘଟଣାକୁ ଦେଖି କୌତୂହଳରେ ତାଳିମାରି ନାଚି ଉଠିଲେ । ସେମାନଙ୍କ ନାଚ ଦେଖି କଇଞ୍ଛ ମନରେ ଖୁବ୍ ରାଗହେଲା । ସେ ତାଙ୍କୁ ଗାଳି ଦେବା

ଉଦ୍ଦେଶ୍ୟରେ ପାଟିକୁ ଖୋଲିଦେଲା । କଇଁଛର ପାଟି ମେଲା ହେଇ ଯିବାରୁ ସେ ଆସି ତଳେ ପଡ଼ିଗଲା । ହଂସମାନେ କୁହା କୁହି ହେଲେ- 'ନିଜ ଦୋଷରୁ ହିଁ ପ୍ରାଣୀ ମରେ । ଆମ କଥାକୁ ନମାନି ସଂଗାତ ଆମର ଆକାଶରୁ ପଡ଼ି ମଲା' ।

**ତା'ପରେ କ'ଣ ହେଲା ?**

କଇଁଛ ତଳେ ପଡ଼ି ଯିବାରୁ ହଂସମାନେ ମନଦୁଃଖରେ କେତେଦିନ ପର୍ଯ୍ୟନ୍ତ ଆଉ ସେ ପୋଖରୀକୁ ଗଲେନାହିଁ । ଦିନେ ସେମାନେ ପୋଖରୀ କୂଳରେ ବସି ମିତ କଥା ଭାବୁଛନ୍ତି । ହଠାତ୍ କଇଁଛ ପାଣିରୁ ବାହାରି ଆସି ସେଇଠି ପହଞ୍ଚିଗଲା । ତାକୁ ଦେଖି ହଂସମାନେ ଡରିଗଲେ ।

ହଂସ କହିଲା- 'ମିତ ! ତମେ ସେଦିନ ଆକାଶରୁ ଖସି ପଡ଼ିଥିଲ । ପୁଣି ଏଠିକି କେମିତି ଆସିଲ' ?

କଇଁଛ ହସି ହସି କହିଲା- 'ଏଇ ଗୋଟାଏ କଥା ! ତମେ ତ ଜାଣିଛ, ମୋ ଦେହକୁ ରକ୍ଷା କରିବା ପାଇଁ ଗୋଟାଏ ଟାଣୁଆ ଖୋଳପା ଅଛି । ଯେତେ ଉପରୁ ଯେଉଁଠି ପଡ଼ିଲେ ବି ମୋର କିଛି କ୍ଷତିହୁଏ ନାହିଁ । ତେଣୁ ମୁଁ ଜାଣି ଜାଣି ତଳକୁ ଡେଇଁ ପଡ଼ିଥିଲି । ଆକାଶରେ ଉଡ଼ିବା ଅଭିଜ୍ଞତା ହାସଲ କଲା ପରେ ଭାବିଲି, ଆକାଶରୁ ଡେଇଁବା କେମିତି ଲାଗୁଛି ? ତେଣୁ ତଳକୁ ଡେଇଁ ପଡ଼ିଥିଲି । ବଡ଼ିଆ ମଜା ଲାଗିଲା । ତା'ପରେ ମୁଁ ଚାଲି ଚାଲି ମୋ ପୋଖରୀକୁ ଆସିଗଲି' ।

ହଂସମାନେ କଇଁଛର ସାହସିକ କାର୍ଯ୍ୟକୁ ବେଶ୍ ପସନ୍ଦ କରି କହିଲେ-' ସତରେ ନିଜର ଶକ୍ତି ଓ ସାମର୍ଥ୍ୟ ଥିଲେ, ଏ'ଭଳି ସାହସିକ କାର୍ଯ୍ୟ କରିବା ଉଚିତ । ସାହସିକ କାର୍ଯ୍ୟ ଦ୍ୱାରା ହିଁ ମଣିଷ ଆଗେଇ ଚାଲିଛି । ଆମେ କାହିଁକି ପାରିବା ନାହିଁ ? ଯାହାହେଉ, ଆମେ ତୁମପରି ସାହସୀ ବନ୍ଧୁଙ୍କୁ ପାଇ ଧନ୍ୟ ହେଇ ଯାଇଛୁ ।





# ଘୋଡ଼ା ଓ ମଇଁଷି ବିବାଦ

**ଆମେ ପଢ଼ିଥିଲୁ-**

ବହୁଦିନ ପୂର୍ବରୁ ଘୋଡ଼ା ଓ ମଇଁଷି ବଣରେ ରହୁଥିଲେ। ସେମାନେ ମିଳିମିଶି ଘାସ ଚରନ୍ତି। ପରସ୍ପରକୁ ବିପଦବେଳେ ସାହାଯ୍ୟ କରନ୍ତି। ମଇଁଷିର ବଳ ବହୁତ; କିନ୍ତୁ ବୁଦ୍ଧି କମ୍। ଘୋଡ଼ା ଖୁବ୍ ଜୋରରେ ଦୌଡ଼ି ପାରେ ଏବଂ ତା'ର ବୁଦ୍ଧି ବେଶି। ତେଣୁ ତାଙ୍କୁ କେହି ମାରିବାକୁ ସାହସ କରନ୍ତି ନାହିଁ।

ଥରେ ସେମାନେ ମିଶି ବଣରେ ଚରୁଥିଲେ। ମଇଁଷି ବେଶି ଘାସ ଖାଇ ଯାଉଛି ଭାବି ଘୋଡ଼ା ତା'ସହିତ ଝଗଡ଼ା କଲା। ମଇଁଷି ରାଗିଯାଇ ଘୋଡ଼ାକୁ ତା' ଲମ୍ବା ଶିଙ୍ଗରେ ଭୂଷିଦେଲା।

ଘୋଡ଼ା ମାଡ଼ଖାଇ ଭୀଷଣ ଭାବରେ ରାଗିଗଲା। ସେ ସବୁଦିନ ପାଇଁ ମଇଁଷିକୁ ବଣରୁ ହଟେଇ ଦେବାକୁ ଠିକ୍ କଲା। ଦିନେ ସେ ଗୋଟାଏ ଗାଁ'କୁ ଯାଇ ମଣିଷ ପାଖରେ ପହଞ୍ଚି କହିଲା-'ତମେ ମୋ ପିଠିରେ ବସ। ମୁଁ ତୁମକୁ ବଣକୁ ନେଇଯିବି। ସେଇଠି ଗୋଟାଏ ମଇଁଷି ରହୁଛି। ତାକୁ ଧରିଆଣି ବାନ୍ଧି ରଖ। ସିଏ ତ ବୋକାଟାଏ, ତାକୁ ନେଇ ହଳ ବୁଲେଇଲେ ଠିକ୍ ହେବ। ସେ ପ୍ରଚୁର ପରିମାଣରେ କ୍ଷୀର ବି ଦେବ। ତାକୁ ତମେ ପିଇଲେ, ବଳବାନ ହେଇ ପାରିବ'।

ମଣିଷ ଏମିତି ସୁଯୋଗକୁ ହାତଛଡ଼ା କଲାନାହିଁ । ସେ ଘୋଡ଼ା ପିଠିରେ ବସି ମଇଁଷିକୁ ଫାସ ପକେଇ ଧରିନେଲା । ତାକୁ ନେଇ ଘର ପାଖ ଖୁଣ୍ଟରେ ବାନ୍ଧି ଦେଲା । ତା'ପରେ ଘୋଡ଼ାକୁ ବି ବାନ୍ଧି ରଖିଲା ।

ଘୋଡ଼ା ମଣିଷକୁ ପଚାରିଲା-'ମୋତେ କାହିଁକି ବାନ୍ଧୁଛ' ?

ମଣିଷ କହିଲା-' ମଇଁଷି ପ୍ରଚୁର ପରିମାଣରେ କ୍ଷୀର ଦେଲେ, ତାକୁ ବିକିବାକୁ ମୋତେ ସହରକୁ ଯିବାକୁ ପଡ଼ିବ । ତୁ ଥିଲେ ସିନା ମୋତେ ପିଠିରେ ବସେଇକି ନେଇଯିବୁ। ତେଣୁ ତୋତେ ମୁଁ ଆଉ ଛାଡ଼ିବି ନାହିଁ' ।

ବିଚରା ଘୋଡ଼ା ମନଦୁଃଖରେ ମଇଁଷି ପାଖରେ ସବୁଦିନ ପାଇଁ ବନ୍ଧାହେଇ ରହିଲା ।

**ତା'ପରେ କ'ଣ ହେଲା ?**

ମଣିଷ ଘୋଡାକୁ ବାନ୍ଧି ରଖିବାରୁ ମଇଁଷି ଖୁସି ହେଇଗଲା । କିଛି ସମୟ ପରେ ସେ ଘୋଡ଼ାକୁ କହିଲା-'ଏବେ ତୋ' ମନ ଶାନ୍ତି ହେଇଗଲା ତ ? ଆମ ଘର ଝଗଡ଼ାକୁ ଆମେ ନିଜେ ତୁଟେଇ ପାରି ଥା'ନ୍ତେ । କିନ୍ତୁ ତୁ କେଡ଼େ ବଡ଼ ଆତ୍ମଘାତି କାମ କରିଦେଲୁ, ସେ କଥାକୁ ତୁ ନିଜେ ଜାଣି ପାରୁଥିବୁ । ମୁଁ ତ ମୂର୍ଖ ପଶୁଟାଏ । ମଣିଷ ମୋତେ ଯାହା ଗଣ୍ଡେ ଖାଇବାକୁ ଦେବ । ତାକୁ ଖାଇ ତା' ଗୁହାଳେ ବନ୍ଧା ହେଇ ରହିବି । ମୋ କ୍ଷୀର ନେଇ ସେ ଖାଇବ ଆଉ ବିକିବ । ଏଥିପାଇଁ ମୋର ଦୁଃଖ ନାହିଁ । କିନ୍ତୁ ଅପେକ୍ଷା କର, ତୋର ଅବସ୍ଥା କ'ଣ ହେଉଛି ଦେଖିବୁ' ।

ସତକୁ ସତ, କିଛିଦିନ ପରେ ମଣିଷ ଘୋଡ଼ାର ଟାପୁରେ ଲୁହା ନାଲ ଆଣି ବାଡ଼େଇ ଦେଲା । ତା' ପିଠିରେ ବସି ପିଟିବାକୁ ଗୋଟାଏ ଚାବୁକ୍ କିଣି ଆଣିଲା । ତା' ପାଟି ଭିତର ଦେଇ ଗୋଟାଏ ଲୁହା ତିଆରି ଜଞ୍ଜିର ଲଗାଇ ଦେଲା । ଘୋଡ଼ାର ଦୁଇ ଆଖିର ଦୁଇ ପାଖରେ ଚମଡ଼ା ପଟି ବାନ୍ଧିଦେଲା । ତା' ପିଠି ଉପରେ ବସିବା ପାଇଁ ଗଦି ପକେଇ ଦେଲା । ଗୋଡ଼ ଦେଇ ଚଢ଼ିବା ପାଇଁ ପେଟ ତଳକୁ ଲୁହାରେ ତିଆରି କଡ଼ି ଝୁଲାଇ ଦେଲା । ଏସବୁ ଦେଖି ଘୋଡ଼ାର ହଲକ ଶୁଖିଗଲା । ଭାବିଲା, "ମଣିଷର ମୁଁ କେତେ ଉପକାର କରି ମଇଁଷି ଧରେଇ ଦେଇଥିଲି । ଏଇଟା କ'ଣ ତା'ର ପୁରସ୍କାର" ?

କିନ୍ତୁ ସେତେବେଳକୁ ତ ନେଡ଼ିଗୁଡ଼ କହୁଣୀକୁ ବୋହି ଯାଇ ସାରିଥିଲା । ତା'ର ଆଉ କିଛି କରି ପାରିବାର ନଥିଲା । ସେ କେବଳ ବିକଳ ହେଇ ମଣିଷର ଦୟାକୁ ଅପେକ୍ଷା କରି ରହିଲା ।

କିଛି ସମୟ ପରେ ମଣିଷ ଆସି ଘୋଡ଼ା ପିଠିରେ ବସିଲା । ମୁହଁରେ ଲାଗିଥିବା ଲଗାମ୍‌କୁ ଧରି, ସେ ତା' ପିଠିରେ ଲଗାଇଦେଲା - କସିକି ପାହାରେ । ଘୋଡ଼ା ଆଗରୁ ଏମିତି କେବେ ଚାବୁକ୍ ପାହାର ଖାଇ ନଥିଲା । ତା' ଦେହ ଥରି ଉଠିଲା । ସେ ଜୀବନ ବିକଳେ ଆଗ ଗୋଡ଼କୁ ଟେକି ଦୌଡ଼ିଲା । ତା' ଦୌଡ଼ ଦେଖି ମଇଁ ଷି ଫେଁ ଫେଁ କରି ହସି ଉଠିଲା ।

ସେହି ଦିନଠାରୁ ଘୋଡ଼ା ଓ ମଇଁଷି ଦୁହେଁ ମଣିଷର ସେବାରେ ଲାଗି ରହିଛନ୍ତି । ଘୋଡ଼ା ନିଜ କଲା କର୍ମ ପାଇଁ ଲାଜରେ ମୁହଁ ତଳକୁ କରି ରହିଛି ।





# ହାତୀ ଓ ବିଲୁଆ କଥା

**ଆମେ ପଢ଼ିଥିଲୁ-**

ଜଙ୍ଗଲରେ ହାତୀଟିଏ ଥାଏ । ତା' ସହିତ କେବେ କେବେ ବିଲୁଆର ଦେଖା ହୋଇଯାଏ । ବିଲୁଆ ମନେ ମନେ ଭାବେ, ହାତୀଟା କେତେ ମୋଟା ହେଇଛି । ଯଦି ଏଇଟା କେମିତି ମରି ଯାଆନ୍ତା । ତେବେ ଦୁଇ ଚାରି ମାସ ମୋତେ ଆଉ ଖାଇବା ଚିନ୍ତା ରହନ୍ତା ନାହିଁ ।

ଦିନେ ବିଲୁଆ ବୁଲୁବୁଲୁ ଦେଖିଲା, ଗୋଟାଏ ବଡ଼ ପଙ୍କୁଆ ହ୍ରଦର ପାଣି ଶୁଖି ଯାଇଛି । କାଦୁଅ ଦଲ ଦଲ ହେଉଛି । ସେଥିରେ ଯିଏ ଥରେ ପଶିଯିବ , ସେ କେବେ ବି ଉଠି କରି ଆସି ପାରିବ ନାହିଁ । ତେଣୁ ସେ ଠିକ୍‌କଲା, କୌଣସି ପ୍ରକାରେ ହାତୀକୁ ନେଇ ସେ ପଙ୍କରେ ପୂରେଇ ଦେଲେ କାମ ସରିଯିବ ।

ତା'ପରଦିନ ବିଲୁଆ ଯାଇ ହାତୀ ପାଖରେ ପହଞ୍ଚି କହିଲା- 'ମଉସା ! ତମଭଳି ଦୟାଳୁ ଆଉ ପରୋପକାରୀ ପଶୁ ଆଉ କେହି ଏ'ଜଙ୍ଗଲରେ ନାହାନ୍ତି । ତମ ଦେହରେ ଭଗବାନ ସେଇଥି ପାଇଁ ପ୍ରଚୁର ବଳ ବି ଦେଇଛନ୍ତି । ମୁଁ ଗୋଟାଏ ବିପଦରେ ପଡ଼ି ତମର ସାହାଯ୍ୟ ପାଇଁ ଧାଇଁ ଆସିଛି । ମୋ

ଛୁଆକୁ ବାଘ ନେଇଯାଇ ହ୍ରଦର ସେପଟେ ଲୁଚେଇ ରଖିଛି । ମୁଁ ତ ଛୋଟିଆ ଜୀବଟାଏ । ହ୍ରଦକୁ କେମିତି ପାରିହେବି ? ତମେ ଟିକେ ମୋ ଛୁଆକୁ ଉଦ୍ଧାର କରିଦିଅ । ତମର ବହୁତ ଧର୍ମହେବ' ।

ବିଲୁଆର ବିକଳ ସହି ନପାରି ହାତୀ ଯାଇ ପଙ୍କୁଆ ହ୍ରଦରେ ପଶିଗଲା । ହ୍ରଦ ଭିତରେ ଥିବା ପଙ୍କରେ ତା' ଗୋଡ଼ ଲାଖିଗଲା । ଯେତେ ଚେଷ୍ଟା କଲେ ବି ସେ ଆଉ ପଛକୁ ଫେରି ପାରିଲା ନାହିଁ କି ଆଗକୁ ଯାଇ ପାରିଲା ନାହିଁ । ଏମିତି ଦୁଇ ଚାରିଦିନ ଭୋକ ଉପାସରେ ସେ ହ୍ରଦ ମଝିରେ ଥାଇ ବିକଳ ହେଲା । ଦୂରରୁ ଥାଇ ବିଲୁଆ ଭାରି ଖୁସି ହେଉଥାଏ । ଦିନେ ସେ ଦେଖିଲା, ହାତୀ ନିସ୍ତେଜ ହେଇ ପଡ଼ିଲାଣି । ଡେରି ନକରି ହାତୀକୁ ଖାଇବାକୁ ବିଲୁଆ ପ୍ରସ୍ତୁତ ହେଇ ପଡ଼ିଲା ।

**ତା'ପରେ କ'ଣ ହେଲା ?**

ବିଲୁଆ ଭାବିଲା, ମଲା ହାତୀଟା ହ୍ରଦ ମଝିରେ ପଡ଼ିଛି ଦେଖିଲେ, ତାକୁ ଅନ୍ୟ କେହି ତା'ର ଶିକାର ବୋଲି ଦାବି କରି ପାରେ । ନଚେତ୍ ଆଗୁଆ କେହି ଯାଇ ତାକୁ ଅଇଁଠା କରି ଦେଇପାରେ । ତେଣୁ ତା' ମନ ଚଞ୍ଚଳ ହେଇ ଉଠିଲା । ସେ ଆଉ ଅପେକ୍ଷା କରି ପାରିଲା ନାହିଁ । ଆଗ ପଛ ବିଚାର କରି ନପାରି ସେ ହ୍ରଦ ମଝିକୁ ଡେଇଁ ପଡ଼ିଲା । ହାତୀଠାରୁ ଅଳ୍ପ ଦୂରରେ ସେ ପଡ଼ିଯାଇ ପଙ୍କରେ ଲାଖିଗଲା । ପଙ୍କରୁ କେମିତି ବାହାରିବ, ତାକୁ ଆଉ ଉପାୟ ଦିଶିଲା ନାହିଁ । ସେ ଉପରକୁ ମୁହଁ କରି ବିକଳ ହେଇ କାନ୍ଦିଲା ।

ନିଜକୁ ନିଜେ କହିଲା-'ହାତୀ ମଉସା ବଞ୍ଚିଥିଲେ, ତାକୁ କହିଥା'ନ୍ତି । ସେ ନିଶ୍ଚୟ ତା' ଲମ୍ବା ଶୁଣ୍ଢରେ ମୋତେ ଟାଣି ନେଇଥା'ନ୍ତା । କିନ୍ତୁ ମୁଁ ତ ତାକୁ ଖାଇବାକୁ ଲୋଭ କରି ହ୍ରଦରେ ପୂରେଇ ମାରି ଦେଇଛି । ଏବେ ମୋତେ ହିଁ ମରିବାକୁ ହେବ' ।

ନିସ୍ତେଜ ହେଇ ପଡ଼ିଥିବା ହାତୀ ବିଲୁଆର କଥାକୁ ଶୁଣି ରାଗରେ ତେଜି ଉଠିଲା । ସେ ବିଲୁଆକୁ ଶୁଣ୍ଢରେ ପାହାରେ ଦେବାପାଇଁ ହୁଙ୍କାର ଦେଲା । ସେତେବେଳକୁ ପଙ୍କ ଟିକେ ଶୁଖି ଆସିଥିଲା । ହାତୀର ଗୋଡ଼ ପଦାକୁ ବାହାରି ଆସିଲା ।

ବିଲୁଆ ପଙ୍କ ଭିତରେ ଥାଇ ଯେତେ ବିକଳ ହେଇ ଡାକିଲେ ବି ସେ ଆଉ ତା' କଥାକୁ ଶୁଣିଲା ନାହିଁ ।





## ଜନ୍ତା ବାଘ କଥା

**ଆମେ ପଢ଼ିଥିଲୁ-**

ଥରେ ଗୋଟାଏ ମହାବଳ ବାଘ ବଣରେ ବୁଲୁ ବୁଲୁ ଶିକାରୀର ଜନ୍ତାରେ ପଡ଼ିଗଲା । ସେ ଯେତେ ବିକଳ ହେଲେବି ସେଥିରୁ ମୁକୁଳି ପାରିଲା ନାହିଁ । ଭୋକ ଉପାସରେ ସେ ଛଟପଟ ହେଲା । ଦିନେ ସେ ଦେଖିଲା, ତା'ପାଖ ଦେଇ ଗୋଟାଏ ମାଙ୍କଡ଼ ଯାଉଛି । ତାକୁ ସେ ଡାକି କହିଲା-'ମାଙ୍କଡ଼ ଭାଇ ! ମୋତେ ଟିକେ ବଞ୍ଚାଅ । ଜନ୍ତାର ବାହାର ପଟେ ଥିବା କଡ଼ିଟିକୁ ତମେ ଟିକେ ବାହାର କରି ଦିଅ । ମୁଁ ଏଥିରୁ ମୁକୁଳି ଯାଇ ପାରିବି' ।

ବାଘର କଥା ଶୁଣି ମାଙ୍କଡ଼ କହିଲା-'ତୁ ତ ଗୋଟାଏ ହିଂସ୍ର ପଶୁ । ତୋତେ ମୁକୁଳେଇଲେ, ଆମର କ୍ଷତି । ତୁ ଠିକ୍ ଜାଗାରେ ଅଛୁ । ସେଇଠି ଥା' ।

ବାଘ କେତେ ରାଣ ନିୟମ ଖାଇ କହିଲା-'ଆମେ ପଶୁ ଭାଇ, ଭାଇ । ତମେ ମୋତେ ବଞ୍ଚେଇଥିଲେ, ମୁଁ ତମର ଉପକାର ଦିନେ ନା ଦିନେ ନିଶ୍ଚୟ ସୁଝିଦେବି । ଭଗବାନ ତମକୁ ହାତ ଦେଇଛନ୍ତି, ତାକୁ ଧର୍ମ କାମରେ ଲଗାଇ ଦିଅ' ।

ଏତେକଥା ଶୁଣି ମାଙ୍କଡ଼ ମନରେ ଦୟା ଆସିଲା । ସେ ଜନ୍ତାର କଡ଼ିଟିକୁ ଧରୁ ଧରୁ କଡ଼ିଟା ବାହାରି ପଡ଼ିଲା । ବାଘ ବାହାରକୁ ଆସି ହଠାତ୍ ମାଙ୍କଡ଼କୁ ଧରି ପକେଇ କହିଲା-'ଅନେକ ଦିନ

ହେଲା ମୁଁ କିଛି ଖାଇନାହିଁ , ଭୋକରେ ମୋ ପେଟ ଜଳୁଛି । ତେଣୁ ମୁଁ ତୋତେ ଆଗ ଖାଇବି' ।

ମାଙ୍କଡ଼ କହିଲା-'ଇଏକି କଥା ? ମୁଁ ତୋତେ ବଞ୍ଚେଇଲି, ତୁ ମୋତେ ଖାଇବାକୁ କହୁଛୁ କେମିତି' ?

ବାଘ କହିଲା-'ତୁ ଗୋଟାଏ ମାଙ୍କଡ଼ ହେଇ ମୋତେ ବଞ୍ଚେଇଛୁ ବୋଲି କହୁଛୁ କେମିତି? ଜନ୍ତାର କଡ଼ିଟା ହୁଗୁଳା ଥିଲା, ତୋ ହାତ ବାଜିଛି କି ନାହିଁ, ସେଇଟା ଖୋଲିଗଲା । ପ୍ରକୃତରେ ତୁ କଡ଼ି ଖୋଲିନାହୁଁ । ଆପେ ଆପେ ଖୋଲି ଯାଇଥିଲା'' ।

ଏତିକିବେଳେ ସେହିବାଟ ଦେଇ ବିଲୁଆଟିଏ ଯାଉଥିଲା । ସେ ଦୁହିଁଙ୍କର କଥା ଶୁଣି କହିଲା- 'ବାଘମାମୁ ! ମାଙ୍କଡ଼ଟା ବଡ଼ ମିଛୁଆ ପଶୁ । ତା' କଥାକୁ ମୋର ମୋଟେ ବିଶ୍ୱାସ ନାହିଁ । ତମେ ଗୋଟାଏ କାମ କର । ଆଉଥରେ ତମେ ଜନ୍ତା ଭିତରେ ପଶିଯାଅ । ମୁଁ ନିଜ ଆଖିରେ ଦେଖିବି କଡ଼ିଟା ନିଜେ ଖୋଲୁଛି କି ନାହିଁ?

ବାଘ ନିଜ କଥାକୁ ସତ୍ୟ ବୋଲି ପ୍ରମାଣିତ କରିବା ପାଇଁ ପୁଣି ଥରେ ଜନ୍ତା ଭିତରକୁ ପଶିଗଲା । ଚତୁର ବିଲୁଆ ଦୌଡ଼ିଯାଇ ଜନ୍ତାର କଡ଼ିକୁ ଭଲକରି ଲଗାଇ ଦେଲା । ବାଘ ଆଗରୁ ଯେମିତି ଜନ୍ତା ଭିତରେ ଥିଲା, ସେମିତି ରହିଗଲା ।

**ତା'ପରେ କ'ଣ ହେଲା ?**

ବାଘ ଜନ୍ତା ଭିତରୁ ବାହରିବା ପାଇଁ ଯେତେ ଚେଷ୍ଟା କଲେ ବି ସେ ମୋଟେ ବାହାରି ପାରିଲା ନାହିଁ । ମାଙ୍କଡ଼ ଥରେ ଭୁଲ କରି ତା' ଫଳ ପାଇ ସାରିଛି । ତେଣୁ ସେ ଭୟରେ କୁଦାମାରି ଗଛ ଉପରକୁ ଉଠିଗଲା । ବିଲୁଆ ଦୂରରେ ବସି ମଜା ଦେଖୁଥିଲା ।

ବାଘ ତାକୁ କାକୁତି ମିନତି ହେଇ କଡ଼ିକୁ ବାହାର କରି ଦେବାକୁ କହିଲା । ବିଲୁଆ ତା' କଥାକୁ ମୋଟେ ଶୁଣିଲା ନାହିଁ । ବରଂ କହିଲା-'ମାମୁ ! ମୁଁ ତମରି ସାଙ୍ଗରେ ରହି ବିଭିନ୍ନ ପ୍ରକାର ମାଂସ ଖାଇଛି । କିନ୍ତୁ ବାଘ ମାଂସ କେବେ ଖାଇବାକୁ ସୁଯୋଗ ମିଳି ନଥିଲା । ଆଜି ସେ ସୁଯୋଗଟା ମିଳିଛି । ମୁଁ ଏଇଠି ଅପେକ୍ଷା କରି ବସିବି । ଶିକାରିମାନେ ଆସିଲେ, ତାଙ୍କଠାରୁ କିଛି ନହେଲେ ତ ତମର ହାଡ଼-ଗୋଡ଼ ଦି'ଖଣ୍ଡ ମିଳିଯିବ' ।

ବିଲୁଆର କଥାଗୁଡ଼ାକ ବାଘକୁ କଟା ଘାଆରେ ଚୂନ ଦେଲାପରି ଲାଗିଲା । ସେ ରାଗରେ ଦାନ୍ତକୁ କାମୁଡ଼ି କଡ଼ ମଡ଼ କଲା । କିନ୍ତୁ କିଛି କରି ପାରୁ ନଥିଲା ।

କିଛି ସମୟ ପରେ ବିଲୁଆ ହୁକେ ହୋ କରି ଜୋରରେ ରଡ଼ି ଛାଡ଼ି ଶିକାରୀଙ୍କୁ ଡାକ ପକେଇଲା । ବାଘ ଜନ୍ତା ଭିତରେ ଥାଇ ଭାବିଲା-ମାଙ୍କଡ଼ଟାକୁ ଛାଡ଼ି ଦେଇଥିଲେ, ଏତେ କଥା ହେଇ ନଥାନ୍ତା ।





# ବେଙ୍ଗ ଓ କଳାନାଗ କଥା

**ଆମେ ପଢ଼ିଥିଲୁ- .**

ଗୋଟିଏ ପୁରୁଣା ଭଙ୍ଗା କୂଅରେ ଦୁଇଟି ବେଙ୍ଗ ପରିବାର ବାସ କରୁଥିଲେ । ପିଲାଛୁଆଙ୍କ କଳିରୁ ବଡ଼ ବେଙ୍ଗମାନେ ବି ଝଗଡ଼ା ମାଡ଼ପିଟ ଲାଗିଲେ । ଶେଷରେ ଗୋଟାଏ ବେଙ୍ଗ ବାହାରକୁ ଯାଇ କଳାନାଗକୁ ଡାକି ଆଣିଲା । ତା'ର ପଡ଼ୋଶୀର ଛୁଆମାନଙ୍କୁ ଚିହ୍ନାଇ ଦେଇ ଧୀରେ ଧୀରେ ସେମାନଙ୍କୁ ଖାଇଦେବାକୁ କହିଲା । କଳାନାଗ ସେମାନଙ୍କୁ ଗୋଟିଏ ଗୋଟିଏ ଖାଉ ଖାଉ ସବୁତକ ଶେଷ ହୋଇଗଲେ । କିଛିଦିନ ପରେ ସାପ କହିଲା- 'ଭାଇ ! ତମର ଶତ୍ରୁ ବଂଶ ଲୋପ ପାଇଗଲା । ଏବେ ମୋତେ ଖାଇବାକୁ ଆଉ କିଛି ବେଙ୍ଗ ଆଣି ଦିଅ । ନଚେତ୍ ମୁଁ ତମର ଛୁଆମାନଙ୍କୁ ଖାଇବା ଆରମ୍ଭ କରିବି ।

ସତକୁ ସତ ଦିନେ ସେ ଦେଖିଲା, ତା'ଛୁଆମାନେ କମି କମି ଯାଉଛନ୍ତି। କିଛିଦିନ ପରେ ତା'ର ସବୁଯାକ ଛୁଆ ଶେଷ ହେଇଗଲେ। ଦିନେ ସେ ବେଙ୍ଗ ସାପ ପାଇଁ ଖାଦ୍ୟ ଆଣିବାକୁ ବାହାରକୁ ଗଲା ଯେ, ଆଉ କୂଅକୁ ଫେରିଲା ନାହିଁ।

**ତା'ପରେ କ'ଣ ହେଲା ?**

ବେଙ୍ଗର ଫେରିବା ବାଟକୁ ସାପ ଚାହିଁ ରହିଥାଏ। ଦିନେ ଭୋକ ସମ୍ଭାଳି ନପାରି ସେ ପୁଣି କୂଅ ଉପରକୁ ଆସିଲା। ପଦାରେ ବୁଲୁ ବୁଲୁ ବାଟରେ ବେଙ୍ଗକୁ ଭେଟିଲା। ବେଙ୍ଗ ତାକୁ ଦେଖି ଜୀବନ ବିକଳେ ଦୌଡ଼ିଲା। କଳାନାଗ ତାକୁ ନଗୋଡ଼େଇ କଅଁଳେଇ ପାଖକୁ ଡାକି କହିଲା-' ବନ୍ଧୁ ବେଙ୍ଗ ! ମୋତେ ଭୟ କରନାହିଁ। ମୁଁ ତୁମକୁ କେବେ ବି ମାରିବି ନାହିଁ। ଏବେ ତମେ ତମ ଘର କୂଅକୁ ଫେରିଯାଅ । କିନ୍ତୁ ଗୋଟିଏ କଥା ମନେ ରଖିଥିବ, ନିଜ ଜାତିର କି ନିଜ ପଡ଼ୋଶୀର କ୍ଷତି କରିବା ପାଇଁ କଦାପି ବାହାର ଶତ୍ରୁକୁ ନିଜ ଘରେ ପୂରେଇବ ନାହିଁ। ବେଙ୍ଗ ଲାଜ ଆଉ ଭୟରେ ମୁଣ୍ଡ ଉପରକୁ ଟେକି ପାରିଲା ନାହିଁ। ସେ କାନ୍ଦ କାନ୍ଦ ହେଇ କହିଲା-'ମୋର ସ୍ତ୍ରୀ ପିଲା ଛୁଆମାନଙ୍କୁ ତ ତମେ ଖାଇ ଦେଇ ସାରିଛ। ଆଉ କାହାକୁ ନେଇ ସେ କୂଅକୁ ଫେରିବି ? ମୋ କଳାକର୍ମର ଫଳ ମୁଁ ପାଇ ସାରିଛି। ମୋର ଆଉ ବଞ୍ଚିବାକୁ ଇଚ୍ଛା ନାହିଁ। ତମେ ମୋତେ ବି ଖାଇଦିଅ'।

ବେଙ୍ଗର କଥା ଶୁଣି ସାପ ତାକୁ ବୁଝେଇବାକୁ ଯାଇ କହିଲା-'ମୁଁ ତମକୁ ଖାଇ ବନ୍ଧୁଦ୍ରୋହୀ ହୋଇ ପାରିବି ନାହିଁ। ତମେ ଅନୁତାପ କରି ନିଜ ପାପର ପ୍ରାୟଶ୍ଚିତ କରି ସାରିଛ। ତେଣୁ ଆଉ ମନଦୁଃଖ କରନାହିଁ। ବରଂ ତମର ସାଙ୍ଗ ସାଥୀମାନଙ୍କ ମଙ୍ଗଳ ପାଇଁ ନିଜ କଳାକର୍ମର ଫଳ ବିଷୟରେ କହି ସଚେତନ କରି ଚାଲ।

ମୁଁ ଅନେକ ଦିନ ହେଲା, ମୋ ଘରକୁ ଯାଇନାହିଁ । ମୁଁ ଏବେ ଚାଲିଲି।





## ସିଂହଛୁଆ ଓ ବିଲୁଆ କଥା

**ଆମେ ପଢ଼ିଥିଲୁ-**

ଗୋଟିଏ ବିଲୁଆ ଖାଦ୍ୟ ଖୋଜିବାକୁ ଯାଇ ବଣରେ ସିଂହ ଛୁଆଟିକୁ ପାଇଲା । ନିଜର ଛୁଆମାନଙ୍କ ସହିତ ସେ ଖେଳିବୁଲି ବଢ଼ିଲା । ତେଣୁ ତା'ର ଆଚରଣ ବିଲୁଆ ପରି ହେଇ ଯାଇଥିଲା ।

ଦିନେ ଗୋଟାଏ ସିଂହ ବିଲୁଆମାନଙ୍କ ସହିତ ସିଂହଛୁଆଟିଏ ଖେଳୁଥିବାର ଦେଖିଲା । ସେ ଜାଣିଲା, ସିଂହଛୁଆଟି ବିଲୁଆଙ୍କ ପରି ସିଂହକୁ ଦେଖି ଭୟ କରୁଛି । ତେଣୁ ସେ ହଠାତ୍ ଆକ୍ରମଣ କରି ସିଂହଛୁଆକୁ ଧରି ଚାଲିଗଲା । ତା' କାନରେ କହିଦେଲା-'ତୁ ବିଲୁଆର ଛୁଆ ନୁହଁ । ସିଂହର ଛୁଆ । ତୁ ବଡ ହେଲେ, ବଣର ରାଜା ହେବୁ । ମୁଁ ହେଉଛି-ବଣର ରାଜା ସିଂହ । ମୋତେ ଭୟ କରୁଛୁ କାହିଁକି '?

ସିଂହର କଥା ଶୁଣି ସେ ନିଜ ଦେହକୁ ତା' ସହିତ ମିଳେଇ ଦେଖିଲା । ସମାନ ମିଶି ଯାଉଛି । ସେ ସେହି ଦିନରୁ ଆଉ କାହାରିକୁ ଭୟ କଲାନାହିଁ । ସିଂହ ସହିତ ମିଶି ଗୁମ୍ଫାରେ ରହିଲା ।

**ତା'ପରେ କ'ଣ ହେଲା ?**

ସିଂହଛୁଆ ବିଲୁଆ ଗାତରୁ ଯାଇ ସିଂହ ଗୁମ୍ଫାରେ ରହିବାରୁ ତା'ର ସ୍ୱଭାବ ବଦଳି ଗଲା । କିନ୍ତୁ ବିଲୁଆ ମାଆର ମମତା ଏବଂ ବିଲୁଆ ଭାଇ ଭଉଣୀଙ୍କ ସ୍ନେହକୁ ସେ ଭୁଲି ପାରିଲା ନାହିଁ ।

ଦିନେ ସେ ରାଜା ହେବା ପୂର୍ବରୁ ଆସି ବିଲୁଆ ଗାତ ପାଖରେ ପହଞ୍ଚିଗଲା । ଏହା ଭିତରେ ସିଂହଛୁଆର ରୂପ ଚାହାଣି ସବୁ ବଦଳି ଯାଇଥିଲା । ତାକୁ ଦେଖି ବିଲୁଆ ଛୁଆମାନେ ଭୟରେ ଗାତ ଭିତରକୁ ପଶିଗଲେ । ବିଲୁଆ ମାଆ ତାକୁ ଠିକ୍ ଚିହ୍ନି ପାରିଲା । ପାଖକୁ ଯାଇ ତାକୁ ଚାଟି ଗେଲ କରିଦେଲା । ଗାତରେ ରଖିଥିବା ଠେକୁଆ ମାଂସ ଆଣି ଖାଇବାକୁ ଦେଲା । ଅନ୍ୟମାନେ ମାଆ ପୁଅର ମିଳନ ଦେଖି ଅବାକ୍ ହେଇଗଲେ ।

ସିଂହଛୁଆ ବିଦାୟ ନେବାବେଳେ କହିଗଲା- 'ମାଆ ! ମୁଁ ତମରି କୋଳରେ ବଢ଼ିଛି, ତମେ ମୋତେ କ୍ଷୀର ଦେଇ ବଞ୍ଚେଇ ରଖିଥିଲ । ତମକୁ ମୁଁ କଦାପି ଭୁଲି ପାରିବି ନାହିଁ । ତମେ ନିର୍ଭୟରେ ଚାରିଆଡ଼େ ବୁଲି ପାରିବ । ଆମେ ଶିକାର କଲେ, ସେଥିରେ ତମର ବି କିଛି ଭାଗ ରହିବ । କିନ୍ତୁ ଗୋଟିଏ କଥା ମନେ ରଖିଥିବ । ଯେତେ ଅସୁବିଧାରେ ପଡ଼ିଲେ ବି ତମେ କୁକୁର ପରି ମଣିଷ ପାଖରେ ଯାଇ ରହିବ ନାହିଁ । ନିଜ ସ୍ୱାଭିମାନକୁ ବଜାୟ ରଖିବ । ନିଜ ବୁଦ୍ଧି, ନିଜ ବଳରେ ଖାଇପିଇ ବଣରେ ରହିବ । ଅନ୍ୟମାନେ ଜାଣିବେ- ବିଲୁଆର ବୁଦ୍ଧି ଅଛି, ସାହସ ଅଛି, ଶକ୍ତି ଆଉ ସ୍ୱାଭିମାନ ବି ଅଛି । ତେବେ ଯାଇ ତୋର ପୁଅ ବୋଲି କହି ମୁଁ ଗର୍ବ କରିବି' ।

ଏତିକି କହି ସିଂହଛୁଆ ସବୁଦିନ ପାଇଁ ବିଦାୟ ନେଇ ରାଜା ହେବାକୁ ଚାଲିଗଲା । ବିଲୁଆ ସବୁଦିନ ପାଇଁ ତା'କଥାକୁ ମନେରଖି ବଣରେ ରହିଲା । ମଣିଷର ପୋଷା ମାନିଲା ନାହିଁ, କି କାହାରି ସେବାକାରୀ ହୋଇ ରହିଲା ନାହିଁ ।





# ବୋକା କୁକୁର କଥା

**ଆମେ ପଢ଼ିଥିଲୁ-**

ଗୋଟିଏ କୁକୁର ଖଣ୍ଡିଏ ମାଂସ ପାଇଗଲା । ତାକୁ ପାଟିରେ ଧରି ସେ ନଦୀ ସେପଟକୁ ଯାଉଥିଲା । ବାଟରେ ପୋଲ ପଡ଼ିଲା । ତାକୁ କାଳେ ଆଉ କେହି ଦେଖି ଦେବ, ସେଥିପାଇଁ ସେ ଏଣିକି ତେଣିକି ଚାହୁଁଥିଲା । ହାଠାତ୍ ତା'ଦୃଷ୍ଟି ନଦୀର ପାଣି ଭିତରକୁ ପଡ଼ିଗଲା । ପାଣିରେ ତାକୁ ଆଉ ଗୋଟାଏ ତା' ପରି କାଙ୍ଗିଆ କୁକୁର ଦେଖାଗଲା । ସେ ମଧ୍ୟ ଖଣ୍ଡିଏ ମାଂସ ଧରିଥିଲା ।

ସେଇଟା ତା'ର ପ୍ରତିବିମ୍ବ ଥିଲା ବୋଲି ସେ ଜାଣି ପାରିଲା ନାହିଁ । କୁକୁରଟି ଈର୍ଷାରେ ତାକୁ କଟମଟ କରି ଚାହିଁଲା । ଭାଉ ଭାଉ କରି ରଡ଼ି ଦେଇ ସେ କୁକୁର ଉପରକୁ ଡେଇଁ ପଡ଼ିଲା । ତା'ପାଟି ଖୋଲି ଯିବାରୁ ମାଂସ ଖଣ୍ଡିକ ପାଣିରେ ପଡ଼ିଗଲା । ତା'ପରେ ସେ ନିଜେ ଯାଇ ନଦୀ ମଝିରେ ପଡ଼ି ଭାସିଗଲା ।

## ତା'ପରେ କ'ଣ ହେଲା ?

କାଞ୍ଚିଆ କୁକୁରଟି ନଦୀରେ ଭାସି ଯାଉଥିବା ବେଳେ ସେ ଜାଣି ପାରିଲା, ନିଜର ପ୍ରତିବିମ୍ବକୁ ଦେଖି ସେ ତୁଚ୍ଛାଟାରେ ନିଜ ପ୍ରତି ଈର୍ଷା କରିଥିଲା । ଜୀବନ ବିକଳେ ସେ ପହଁରି ପହଁରି ବହୁତ କଷ୍ଟରେ କୂଳରେ ଲାଗିଲା । ଆଉ ସେ ଭବିଷ୍ୟତରେ ଏମିତି କେବେ ଈର୍ଷା କି ଝଗଡ଼ା କରିବ ନାହିଁ ବୋଲି ଶପଥ ନେଲା ।

ନଦୀ କୂଳରେ ଆଉ ଗୋଟାଏ କାଳିଆ କୁକୁର ଠିଆ ହେଇଥିଲା । ସେ ତାକୁ ଦେଖି କାମୁଡ଼ିବାକୁ ଗୋଡ଼େଇ ଆସିଲା । ଅଳ୍ପ ସମୟ ପୂର୍ବରୁ ଶପଥ ନେଇ ଥିବାରୁ ସେ ତା'ସହିତ ଝଗଡ଼ା ନକରି ତାକୁ ବୁଝେଇଲା । କାଳିଆ ତା'ର ଦୟନୀୟ ଅବସ୍ଥା ଦେଖି ଦୟାକଲା । ଦୁହିଁଙ୍କ ମଧ୍ୟରେ ବନ୍ଧୁତା ବଢ଼ିଗଲା । ଦୁହେଁ ଦୁହିଁଙ୍କୁ ଚାଟି ଗେଲ କରିଦେଲେ । ନଦୀରେ ଲୁଚି ରହିଥିବା କୁମ୍ଭୀରଟାଏ ହଠାତ୍ କଳା କୁକୁରକୁ ଆକ୍ରମଣ କରି ପାଣି ଭିତରକୁ ଟାଣି ନେଇଗଲା । ତାକୁ ଦେଖି କାଞ୍ଚିଆ ଚୁପ୍ ହେଇ ରହି ପାରିଲା ନାହିଁ । ସେ ତା'ନୂଆ ସାଙ୍ଗକୁ ରକ୍ଷା କରିବାକୁ ପାଣି ଭିତରକୁ ଡେଇଁ ପଡ଼ିଲା ।

କଥାରେ ଅଛି, ଯୋଡ଼ାକୁ ଘୋଡ଼ା ସରି ନୁହେଁ । କାଞ୍ଚିଆ ଆକ୍ରମଣରେ ହାଲିଆ ହେଇ କୁମ୍ଭୀର କାଳିଆକୁ ଛାଡ଼ି ଜୀବନ ବିକଳେ ନଦୀ ଭିତରକୁ ପଳାଇଗଲା ।

କୁକୁର ଦୁହେଁ ଖୁସି ମନରେ ଗାଆଁକୁ ଫେରିଲେ । ଯାହା ଯେତେବେଳେ ପାଇଲେ, ମିଳିମିଶି ଖାଇଲେ । ଶତ୍ରୁକୁ ଦେଖିଲେ ଦୁଇଜଣ ମିଳିତ ଆକ୍ରମଣ କଲେ । ତେଣୁ ସେମାନେ ନିର୍ଭୟରେ ମଜାରେ ରହିଲେ । ଦିନେ କାଳିଆକୁ ସେ କହିଲା-' ମୁଁ ଈର୍ଷା ଓ ଝଗଡ଼ା କରିବା ଛାଡ଼ି ଦେଇଥିବାରୁ ଆଜି ବେଶ ସୁଖ ଓ ଶାନ୍ତିରେ ରହିଛି । ସେଇଥି ପାଇଁ ତୋ ଭଳି ଭଲ ସାଙ୍ଗକୁ ମଧ୍ୟ ପାଇ ପାରିଛି' । କାଳିଆ କହିଲା - "ସତ କଥା । ତୁ ସେ ଦିନ ମୋର ସାଂଗ ହେଇ ନ ଥିଲେ, କୁମ୍ଭୀର ପାଟିରେ ସେ ଦିନ ମୁଁ ନିଶ୍ଚୟ ପଡ଼ି ଯାଇଥା'ନ୍ତି । ଏଇତ ସାଂଗ ହେବାର ମଜା ।





# ଦୁଇ ଛେଳି କଥା

**ଆମେ ପଢ଼ିଥିଲୁ-**

ଥରେ ଗୋଟିଏ ଦାଢ଼ିଆ ଛେଳି ନଈ ସେପଟେ ଥିବା ଘାସ ପଡ଼ିଆକୁ ଚରିବାକୁ ଯାଉଥିଲା । ବାଟରେ ଗୋଟିଏ ଛୋଟିଆ ବାଉଁଶ ପୋଲ ପଡ଼ିଲା । ସେ ତରବର ହେଇ ପୋଲ ଉପରକୁ ଚାଲିଯାଇ ଦେଖିଲା, ସେପଟରୁ ପେଟୁଆ ଛେଳିଟା ପୋଲ ଉପରକୁ ଉଠି ଆସିଛି । ସେ ମନକୁ ମନ ଭାବିଲା, ପେଟୁଆ ତ ଖାଇ ସାରିକି ଫେରୁଛି । ତେଣୁ ସେ ପଛକୁ ଫେରିବା ଉଚିତ । ମୁଁ ଭୋକରେ ଅଛି, ତେଣୁ ମୁଁ ଆଗ ଯିବି ।

ଏପଟରୁ ଦାଢ଼ିଆ, ସେପଟରୁ ପେଟୁଆ ଛେଳି ବାଉଁଶ ପୋଲ ଉପରେ ଆଗେଇ ଚାଲିଲେ । ଦୁଇଟା ଯାକ ଛେଳି ସାମନା ସାମନି ହେଲେ । ପେଟୁଆ ଛେଳି ଆଗ ଯିବାକୁ ଜିଦ୍ ଧରିଲା ! ଦାଢିଆ

ଛେଳି ତାକୁ ମାରିବାକୁ ଧମକେଇଲା । ଶେଷରେ ଦୁଇଜଣ ଛେଳି ପରସ୍ପରକୁ ମାରିବା ପାଇଁ ଆଗ ଗୋଡ଼ ଟେକି ଠିଆ ହେଇ ପଡ଼ିଲେ । ତା'ପରେ ଦୁହେଁଯାକ ଭାରସାମ୍ୟ ରକ୍ଷା କରି ନପାରି ନଈ ମଝିରେ ପଡ଼ି ଭାସିଗଲେ ।

**ତା'ପରେ କ'ଣ ହେଲା ?**

ଛେଳି ଦୁଇଟା ନଈରେ ପଡ଼ି ଯିବା ଖବର ପାଇ ତାଙ୍କର ଛୁଆମାନେ ଆସି ପୋଲ ପାଖରେ ପହଞ୍ଚିଲେ । ସେମାନେ କହିଲେ-'ଏ'ପୋଲକୁ ଯିଏ ତିଆରି କରିଛି, ସିଏ ହିଁ ଆମ ମାଆଙ୍କ ମୃତ୍ୟୁର କାରଣ । ଯଦି ପୋଲ ତିଆରି ହେଇ ନଥା'ନ୍ତା, ତେବେ ସେମାନେ ନଈ ସେପାରିକୁ ଯାଇ ନଥା'ନ୍ତେ । ତେଣୁ ଆଗ ଏଇ ପୋଲକୁ ଭାଙ୍ଗି ଦେବାକୁ ହେବ' ।

ଛେଳି ଛୁଆଙ୍କ କଥା ଶୁଣି ସାରି ବୁଢ଼ାଛେଳି କହିଲା-'ହଇରେ ପିଲେ ! ତମେ ଆଜିକାଲିକା ମଣିଷଙ୍କ ଭଳି କ'ଣ ଏମିତି ଓଲଟା କଥା କହୁଛ ? ଚାଲି ନଜାଣି ବାଟର ଦୋଷ ଦେଉଛ । ଅତି ଛୋଟ ଛୋଟ କଥାକୁ ଆମେମାନେ ଜିଦ୍ କରି ନିଜର ସର୍ବନାଶ କରିଥାଉ । ଭଲ କାମରେ ଜିଦ୍ କଲେ ସିନା ନିଜର ତଥା ଅନ୍ୟର ଲାଭ ହେଇଥାଏ । ତମେ ଆଗ ନିଜେ ଚାଲିବା ଶିଖ । ଅନ୍ୟକୁ ଚାଲିବାକୁ ସୁଯୋଗ ଦିଅ । ତେବେ ଯାଇ ସମସ୍ତେ ଭଲରେ ରହି ପାରିବ । ପର ଦୋଷ ଦେଲେ ନିଜର କ୍ଷତି କରିବା ସାର । ମଣିଷ ଆମକୁ ଡରୁଆ ପଶୁ କହନ୍ତି । ତମର ଏମିତିକା କାମକୁ ଦେଖିଲେ, ପୁଣି ସେମାନେ ଆମକୁ ବୋକା ଛେଳି ବୋଲି କହିବେ' ।

ବୁଢ଼ାଛେଳିର କଥା ଶୁଣି ଅନ୍ୟ ଛେଳିମାନେ କଥାର ମର୍ମ ବୁଝିଗଲେ । ଏଣିକି ଅନ୍ୟକୁ ସୁବିଧା ଦେଇ ନିଜେ ସୁବିଧାରେ ପୋଲ ପାରି ହେବେ ବୋଲି ଶପଥ ନେଲେ ।





# ହଳଦି ବସନ୍ତ ଓ ହନୁ ମାଙ୍କଡ଼ କଥା

**ଆମେ ପଢ଼ିଥିଲୁ-**

ଗୋଟିଏ ମାଙ୍କଡ଼ ତେନ୍ତୁଳି ଗଛରେ ବସି କଅଁଳ ପତ୍ର ଖାଉଥିଲା । ସେ ଦେଖିଲା, ହଳଦି ଗୁରୁଗୁରୁ ସୁନ୍ଦର ଚଢ଼େଇଟି ସେହି ଗଛର ଡାଳରେ ଥିବା ବସି ଗୀତ ଗାଉଛି । ସେ ପଚାରିଲା-'ତୁ କିଏ, କେଉଁଠୁ ଆସିଛୁ; କ'ଣ ପାଇଁ ଏଠି ଗୀତ ଗାଉଛୁ '?

ଚଢ଼େଇଟି ହସି ହସି ମଧୁର ସ୍ୱରରେ କହିଲା-'ଭାଇନା ! ମୁଁ ହେଉଛି, ବିଦେଶୀ ପକ୍ଷୀ । ମୋ ନାଆଁ ହଳଦୀ ବସନ୍ତ । ମୁଁ ପ୍ରତିବର୍ଷ ଏଠିକି ଆସେ । ଏଇ ଗଛରେ ବସା ବାନ୍ଧେ । ଅଣ୍ଡାରୁ ଛୁଆ ବାହାରି ବଡ଼ିଗଲେ, ତାଙ୍କୁ ନେଇ ଆମ ରାଜ୍ୟକୁ ନେଇଯାଏ । ମୁଁ ତ ତମକୁ ଚିହ୍ନିଛି । ତମେ କ'ଣ ମୋତେ ଚିହ୍ନିନା ?' ।

ହନୁ ତା'କଥା ଶୁଣି କହିଲା-'ମୁଁ ଏ'ରାଜ୍ୟର ପ୍ରାଣୀ ହେଇ ଆଜି ପର୍ଯ୍ୟନ୍ତ ତତେ ଚିହ୍ନିନାହିଁ, ତୁ କେଉଁଠୁ ଆସି ମୋତେ ଚିହ୍ନି ସାରିଲୁଣି ! ହଉ ଆଗ କହିଲୁ, ମୋତେ କେମିତି ଆଉ କେଉଁଠି ଦେଖିଥିଲୁ'?

ହଳଦି ବସନ୍ତ କହିଲା-'ଭାଇନା ! ଗତ ବର୍ଷ ତମକୁ ଦେଖିଥିଲି, ଏହି ଗଛ ଉପରେ ଏଇମିତି ବସିଥିଲ । ଖରା, ବର୍ଷା ଓ ଶୀତରେ ତମେ ସବୁଦିନ ଏଇ ଖୋଲା ଆକାଶ ତଳେ ରହୁଛ । ତମର କଷ୍ଟ ଦେଖିଲେ, ମୋତେ ଦୁଃଖ ଲାଗୁଛି । ତମର ତ ହାତ ଗୋଡ ପୁଣି ବୁଦ୍ଧି ବି ରହିଛି । ତମେ ଗୋଟାଏ ଘର କରି ମଜାରେ ରହୁନା'?

ଚଢ଼େଇର କଥା ଶୁଣି ମାଙ୍କଡ଼ ଭୀଷଣ ରାଗି ଯାଇ କହିଲା-'କିରେ ! ତୁ ଗୋଟାଏ ସାମାନ୍ୟ ଚଢ଼େଇ ହେଇ ମୋତେ ବୁଦ୍ଧି ଶିଖେଇ ଦେଉଛୁ । ରହ ତୋତେ ମଜା ଚଖେଇ ଦେଉଛି' ।

ତା'ପରେ ସେ ଗଛର ଡାଳକୁ ଟାଣି ଆଣି ଚଢ଼େଇର ବସାକୁ ଭାଙ୍ଗି ତଳକୁ ଫୋପାଡ଼ି ଦେଲା ।

**ତା'ପରେ କ'ଣ ହେଲା ?**

ମାଙ୍କଡ଼କୁ ଭଲକଥା କହି କିଛି ଲାଭ ହେଲାନାହିଁ । ଦୁଷ୍ଟ ପ୍ରକୃତିର ମାଙ୍କଡ଼ ତା' ବସାକୁ ଭାଙ୍ଗି ଦେଇଥିବାରୁ ସେ ମନ ଦୁଃଖରେ ଆଉ ଗୋଟାଏ ଗହଳ ପତ୍ର ଥିବା ଗଛରେ ଯାଇ ବସା ବାନ୍ଧିଲା । ସେ ତା'ର ସାଙ୍ଗମାନଙ୍କୁ ମଧ୍ୟ ସବୁ କଥା କହି ଦେଇଥିଲା ।

ବୁଢ଼ା ହଳଦି ବସନ୍ତ ତାକୁ କହିଲା-'ତୁ ମୂର୍ଖ ପଶୁକୁ ଜ୍ଞାନ ଦେବାକୁ ଯାଇ ଏ'ଫଳ ପାଇଲୁ । ଅନ୍ଧକୁ ଦର୍ପଣ ଦେଲେ, ସେ କ'ଣ କରି ପାରିବ? ମାଙ୍କଡ଼ ଯଦି ଘର କରି ରହିଥା'ନ୍ତା, ତେବେ ସେ କେବେଠାରୁ ମଣିଷ ପରି ବୁଦ୍ଧିଆ ହେଇ ସାରନ୍ତାଣି । 'ତୋର ଭଲକଥାକୁ ସେ ଶୁଣିଲା ନାହିଁ । ଯିଏ ସବୁବେଳେ ପରର ଘର ଭାଙ୍ଗିବାକୁ ଭାବେ । ଭଗବାନ ତାକୁ ସଦ୍‌ବୁଦ୍ଧି ଦିଅନ୍ତି ନାହିଁ କି ତାକୁ ଘର ତିଆରି କରେଇ ଦିଅନ୍ତି ନାହିଁ । ମୂର୍ଖ ମାଙ୍କଡ଼ର ଅବସ୍ଥା ସେଇଆ ହେଇଛି । ସେ କେବଳ ଭାଙ୍ଗି ଜାଣେ , ଗଢ଼ି ଜାଣେନା । ତେଣୁ ଭଗବାନ ତା' ବୁଦ୍ଧିକୁ ଦୁର୍ବୁଦ୍ଧି କରି ଦେଇଛନ୍ତି । ଯିଏ ଅନ୍ୟକୁ ହଇରାଣ କରେ, ଭଗବାନ ତାକୁ ହଇରାଣ କରାନ୍ତି"।

ସତକୁ ସତ ବର୍ଷା ଦିନରେ ମାଙ୍କଡ଼ ବିଚରା ଏ'ଗଛ ମୂଳରୁ ସେ ଗଛ ମୂଳ ହେଇ ବଡ଼ ହଇରାଣ ହେଲା । ଆଶ୍ରା ଟିକେ ପାଇଁ ଉହଳ ବିକଳ ହେଲା । ତାକୁ ଦେଖି ହଳଦି ବସନ୍ତ ମନ ଦୁଃଖ କଲା ।



ଶିଶୁ ସାହିତ୍ୟିକ ଭାବେ ବେଶ୍ ଜଣାଶୁଣା ନାମ-ଡକ୍ଟର କୃତ୍ତିବାସ ନାୟକ । ଜନ୍ମ-୦୨.୦୩.୧୯୫୫, ଗ୍ରାମ-ଏକତଳା, ରାଜକନିକା, କେନ୍ଦ୍ରାପଡ଼ା । ୨୦୦୬ ସୁଦ୍ଧା ତାଙ୍କର ୮୨ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି । ସେଥିମଧ୍ୟରୁ ୩ ଖଣ୍ଡ ପୁସ୍ତକ ଜାତୀୟ ସ୍ତରରେ ପୁରସ୍କୃତ । ୪ଖଣ୍ଡ ଗୀତି କବିତା ପୁସ୍ତକ, ଦୁଇଖଣ୍ଡ ଉପନ୍ୟାସ ବେଶ୍ ଲୋକପ୍ରିୟ ହୋଇଛି । ସଂପ୍ରତି ଡକ୍ଟର ନାୟକ ଆକାଶବାଣୀର ଜଣେ ବରିଷ୍ଠ ଅଧିକାରୀ ଭାବେ କାର୍ଯ୍ୟରତ ।



# ଅଭିନବ ନୀତି ଶିକ୍ଷା